ବର୍ଷ : ୩୪ ଫେବୃୟାରୀ ୨୦୦୨ ଅଙ୍କ : ୩୬

















## ସୂଚୀପତ୍ର



SUBSCRIPTION

**For USA and Canada**
**Single copy $2**
**Annual subscription $20**
***Remittances in favour of Chandmama India Ltd.***
**to**
**Subscription Division**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097
E-mail : subscription@chandamama.org

**Gift Subscriptions**
**By Air Mail to All Countries other than India**
**Twelve issues Rs. 900**
**Within India Rs. 120**
**by book post**
Send your remittances by Demand Draft or Money Order favouring 'Chandama India Limited'



ସଂସ୍ଥାପକ
ଚକ୍ରପାଣି ଓ ବି. ନାଗି ରେଡ୍ଡି

# ଏକ ବିଂଶ ଶତାବ୍ଦୀର ସୂତ୍ର

ଆମେ ଅନେକ ପ୍ରକାର ଜୀବାଣୁଙ୍କ ସମ୍ପର୍କରେ ଶୁଣିଥାଉ, ଯେଉଁମାନେ ଆମର ଚର୍ତୁପାର୍ଶ୍ୱରେ ଥିବା ପରିବେଶରେ ବିକ୍ଷିପ୍ତଭାବେ ରହିଥାନ୍ତି । ସେମାନେ ମଣିଷ ଶରୀରକୁ କୌଣସି ନା କୌଣସି ପ୍ରକାରରେ ଆକ୍ରାନ୍ତ କରନ୍ତି । ପ୍ରକୃତି ମଧ୍ୟରୁ ଏହି ଜୀବାଣୁ ମାନଙ୍କର ସୃଷ୍ଟି ହୋଇ ପାଣି-ପବନରେ ପଶୁ-ପକ୍ଷୀ ଓ ବୃକ୍ଷଲତା ମାଧ୍ୟମରେ ସଂକ୍ରମିତ ହୋଇଥାଏ । ଏହି ସବୁ ଜୀବାଣୁଙ୍କୁ ବିଜ୍ଞାନ ଦ୍ୱାରା ସୂକ୍ଷ୍ମତମ ମାଧ୍ୟମ ଦ୍ୱାରା ନିୟନ୍ତ୍ରଣ କରାଯାଏ ।

ପରୋକ୍ଷରେ, ଏପରି ଅନେକ ଜୀବାଣୁ ଅଛନ୍ତି ଯେଉଁମାନଙ୍କର ଜନ୍ମ ମଣିଷର ମସ୍ତିଷ୍କରେ ସଂଘଟିତ ହୋଇଥାଏ । ଏହି ପ୍ରକାର ଜୀବାଣୁ ମଣିଷର ମାନସିକ ଅବସ୍ଥାକୁ ଏକପ୍ରକାର ବିକ୍ଷୁବ୍ଧ କରିଦିଅନ୍ତି । କିନ୍ତୁ ସେପରି ବିକ୍ଷୁବ୍ଧତାକୁ କେହି କେହି ଏକ ଆଦର୍ଶ ଭାବେ ଗ୍ରହଣ କରି ଭୁଲ୍ ଦିଗରେ ପରିଚାଳିତ ହୁଅନ୍ତି । ଆଦର୍ଶ କହିଲେ ଆମେ ନୀତିଗତ ନିୟମ, ବିଶ୍ୱାସ କୁ ବୁଝିଥାଉ । ଅବଶ୍ୟ, ଏକ ନିର୍ଦ୍ଦିଷ୍ଟ ଆଦର୍ଶକୁ ନେଇ ରାଜନୈତିକ ଦଳ, ଅନୁଷ୍ଠାନ ଗଢ଼ାଯାଇଥାଏ । ଏହିପରି ଆଦର୍ଶ ଗୁଡିକୁ ଆଧାର କରି ବ୍ୟକ୍ତି ଓ ଅନୁଷ୍ଠାନ ପରିଚାଳିତ ହେଲେ ମଧ୍ୟ, ସମାଜର ବିଶେଷ ଉନ୍ନତି ସାଧନ ହୋଇପାରେ ନାହିଁ । ଏବେ ସଂତ୍ରାସବାଦ ଏକ ଆଦର୍ଶରେ ପରିଣତ ହୋଇଛି । ଏହା ଏକ ନିର୍ଦ୍ଦିଷ୍ଟ କାରଣ ବହନ କରି ଆରମ୍ଭ ହୋଇଥିଲେ ମଧ୍ୟ ପରିଶେଷରେ ଏହାର ପରିଣତି ରକ୍ତାକ୍ତ ନରସଂହାରରେ ରୂପାନ୍ତରିତ ହୁଏ ।

ବର୍ତ୍ତମାନର ବିଶ୍ୱ ସଂତ୍ରାସବାଦୀ କାର୍ଯ୍ୟକଳାପରେ ଆତଙ୍କିତ । ସଂତ୍ରାସବାଦର ପ୍ରଭାବହେତୁ ବିଶ୍ୱର ବିଭିନ୍ନ ଦେଶର ସାଧାରଣ ଜୀବନ ଯାତ୍ରା ବ୍ୟାହାତ ପ୍ରାୟ । ଏହା କେତେକ ମାନସିକ ବିକାରଗ୍ରସ୍ତ ମଣିଷମାନଙ୍କର ଖେଳ । ଏହିପରି ଆତତାୟୀ ମାନଙ୍କର ଖେଳର ଶୀକାର ହୁଅନ୍ତି କେତକ ନିରୀହ ଜନସାଧାରଣ ।

ଆମେ ଏବେ ବିଂଶ ଶତାବ୍ଦୀର ସଭ୍ୟ ସମାଜର ବସବାସ କରୁଛୁ । ଯେଉଁଠାରେ, ତଥାପି ତିଷ୍ଠି ରହିଛି ବଶମୂଳକର ବର୍ବରତା-ଆଖି ପାଇଁ ଆଖି ! ଆମେ ପ୍ରେମ ସମ୍ପର୍କରେ ବିଶ୍ୱାସ କରୁ ଓ ଭଲପାଇବାର ପୃଥିବୀ କଥା କହୁ । କିନ୍ତୁ ଆମେ ସେ ସବୁ କଣ ପାଳନ କରୁ ?

ଏକ ମାତ୍ର ସତ୍ୟ । ହେଲା ଭଲପାଇବାର ମାର୍ଗ ଏହା ହିଁ ଏକବିଂଶ ଶତାବ୍ଦୀର ସଫଳତାର ସୂତ୍ର ।

---

ସଂପାଦକ : ବିଶ୍ୱମ

'ଭାରତ ବୀରପୁରୁଷ' ପହେଳି ପ୍ରତିଯୋଗିତା ରେ ଭାଗ ନିଅ ଓ ପ୍ରଚୁର ପୁରସ୍କାର ପାଅ

# ଭାରତର ବୀର ପୁରୁଷ-୫

ଭାରତୀୟ ସ୍ୱାଧୀନତା ସଂଗ୍ରାମ ଅନେକ ବୀରଙ୍କୁ ଜନ୍ମ ଦେଇଛି । ଏଥରକୁହତ ସେମାନେ କିଏ ?

ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ମିଳିବ ବାଇସାଇକେଲ.*



1. ସେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠାତା ଅଟନ୍ତି । ତୁମେ ତାଙ୍କର ନାମ କହି ପାରିବ ? ..................................................

2. ସେ 'ସମୁଦ୍ରର ସାରଥି' ଭାବେ ଜଣାଶୁଣା । ତାମିଲ ନାଡୁର ଏହି ବ୍ୟକ୍ତି ନିଜର ଜାହାଜ କମ୍ପାନୀ ଚଳାଇବା ପାଇଁ ବ୍ରିଟିଶ୍ କମ୍ପାନୀକୁ ଅଟକେଇ ଦେଇଥିଲେ ? ..................................................

3. ପିଲାଦିନେ ଏକ ବାଘକୁ ମାରି ନାମ ଅର୍ଜନ କରିଥିବା ସ୍ୱାଧୀନତା ସଂଗ୍ରାମୀ ଜଣକ କିଏ ? ..................................

4. ସେ ତାଙ୍କର ସାଙ୍ଗମାନଙ୍କ ସହିତ ବାଜନାଗର ଠାରେ ଏକ ଟ୍ରେନ ରଖି ଏକ ଟଙ୍କା ବାକ୍ସ ବାହାର କରିଆଣିଲେ । ସେଥିରେ ସେମାନେ ଅସ୍ତ୍ର ଶସ୍ତ୍ର କିଣି ବ୍ରିଟିଶ ସେନାଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ସେମାନେ କିଏ ?..................................

5. ସେ ନାନା ସାହେବଙ୍କ ସେନାବାହିନୀ ନେଇ ବ୍ରିଟିଶ ସେନାଠାରୁ କାନପୁର ଛଡାଇ ଆଣିଲେ । ସେ କିଏ ? ସେ ମଧ୍ୟ ୧୮୫୭ ବିଦ୍ରୋହ ବେଳେ ଝାନସୀର ରାଣୀଙ୍କୁ ସାହାର୍ଯ୍ୟ କରିଥିଲେ ..................................

ପ୍ରତେକଟି ପ୍ରଶ୍ନର ସଠିକ୍ ଉତ୍ତର ସୁନ୍ଦର ଅକ୍ଷରରେ ଲେଖି ପଠାଇବେ । ଏହି ପାଞ୍ଚଜଣ ବୀର ପୁରୁଷଙ୍କ ମଧ୍ୟରୁ କିଏ ତୁମର ପ୍ରିୟ ଓ କାହିଁକି ? 'ମୋର ପ୍ରିୟ ବୀର ପୁରୁଷ' ଦଶଟି ଶବ୍ଦରେ ଲେଖ ।

..................................................

..................................................

ପ୍ରତିଯୋଗୀଙ୍କ ନାମ: ..................................

ବୟସ: ....................... ଶ୍ରେଣୀ: .......................

ଠିକଣା: ..................................

..................................................

..................................................

ପିନ୍: ....................... ଫୋନ୍: .......................

ପ୍ରତିଯୋଗୀଙ୍କ ଦସ୍ତଖତ ..................................

ଅବିଭାବକଙ୍କ ଦସ୍ତଖତ ..................................

ଦୟାକରି ଏହି ପୃଷ୍ଠାଟିକୁ ଚିରି ନିମ୍ନ ଠିକଣାରେ ପଠାନ୍ତୁ :

**Heroes of India Quiz- 5**
CHANDAMAMA INDIA LIMITED
No. 82, Defence Officers Colony
Ekkatuthangal, Chennai - 600 097.
On/before **March 5, 2002**




ବିଶେଷ ସୂଚନା

୧. ଏହି ପ୍ରତିଯୋଗିତା ୮-୧୪ ବର୍ଷ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ।
୨. *ତିନିଜଣ ସଠିକ୍ ଉତ୍ତର ଦାତାଙ୍କୁ ଜହ୍ନମାମୁର ସମସ୍ତ ସଂସ୍କରଣ ଭିତ୍ତିରେ ବଛାଯିବ । ଯଦି କେହି ପ୍ରତିଯୋଗୀ ମୋ ପ୍ରିୟ ବୀର ପୁରୁଷଙ୍କ ସମ୍ପର୍କରେ ଏକାଧିକ ପ୍ରବେଶିକା ପତ୍ର ପଠାଇଥାନ୍ତି ତେବେ ତାହା ସର୍ବୋତ୍ତମ ଉତ୍ତର ଭିତ୍ତିରେ ଗ୍ରହଣ କରାଯିବ ।
୩. ବିଚାରକ ମାନଙ୍କର ନିଷ୍ପତ୍ତି ଚୂଡାନ୍ତ ଅଟେ ।
୪. ଏହି ପ୍ରତିଯୋଗିତା ସମ୍ପର୍କରେ ଚିଠି ପତ୍ର ଗ୍ରହଣ ଯୋଗ୍ୟ ନୁହେଁ ।
୫. ବିଜେତା ମାନଙ୍କୁ ପତ୍ର ଦ୍ୱାରା ଜଣାଇ ଦିଆଯିବ ।



# ବୀରବାହୁର ସନ୍ନ୍ୟାସ ବ୍ରତ

ଜଗତପୁର ଗ୍ରାମରେ ବୀରବାହୁ ନାମକ ଜଣେ ଗରିବ ଲୋକ ରହୁଥିଲା । ତା'ର ପରିବାର କହିଲେ, ପତ୍ନୀ, ଦୁଇଟି ପିଲା ଓ ବୃଦ୍ଧା ମା' । ସେ କଠିନ ପରିଶ୍ରମ କରୁଥିଲେ ମଧ୍ୟ ପରିବାରର ଆବଶ୍ୟକତା ମେଣ୍ଟାଇ ପାରୁ ନଥିଲା । ପେଟପୁରା ଦି'ମୁଠା ଖାଇବାକୁ ବି ଦେଇପାରୁ ନଥିଲା । ତେଣୁ ସେ ସଂସାର ପ୍ରତି ବିତସ୍ପୃହ ହୋଇ ସନ୍ନ୍ୟାସ ଗ୍ରହଣ କରିବାକୁ ସ୍ଥିର କଲା ଓ ଜଙ୍ଗଲ ମଝିରେ ଥିବା ଏକ ମଠକୁ ଯିବା ପାଇଁ ବାହାରି ପଡିଲା ।

ବିଚରା ବୀରବାହୁ ଦୁଃଖରେ ମଥା ନୁଆଁଇ ଜଙ୍ଗଲ ରାସ୍ତାରେ ଯାଉଥାଏ । ରାସ୍ତା ମଝିରେ ଗୋଟିଏ ଟଙ୍କା ଭର୍ତ୍ତି ଥଳୀ ପଡିଥିବାର ସେ ଦେଖିଲା । ସେ ସେହି ଥଳୀ ଉଠାଇ ଆଣିଲା ଓ ବଡ ଉତ୍ସାହରେ ନିଜେ ନିଜକୁ କହିଲା: ''ମନେ ହେଉଛି, ମୋର ସନ୍ନ୍ୟାସ ଗ୍ରହଣ ନିଷ୍ପତ୍ତିକୁ ବନଦେବୀ ପସନ୍ଦ କରୁନାହାନ୍ତି । ତେଣୁ ସେ ମୋତେ କରୁଣା କଲେ ଓ ରାସ୍ତା ମଝିରେ ଏହି ଟଙ୍କାଥଳୀ ମୋ ପାଇଁ ପକାଇ ଦେଲେ । ଏବେ ମୁଁ ଘରକୁ ଫେରିଯିବି ଓ ଆରାମରେ ଜୀବନ ବିତାଇବି ।'' ଏପରି କହି ସେ ଘରମୁହାଁ ହେଲା ।

ତା'ର ଠିକ୍ ପର କ୍ଷଣରେ କାହାର ଚିତ୍କାର ଶୁଭିଲା- ''ଏଃ, ଠିଆ ହୁଅ !''

ବୀରବାହୁ ଡରିଯାଇ ପଛକୁ ଚାହିଁଲା । ମୋଟାସୋଟା ଚୋର ଦୁଇଜଣ ଠିଆ ହୋଇଥିଲେ । ସେମାନଙ୍କ ହାତରେ ଧାରୁଆ ତଲୱାର ଚିକ୍ ଚିକ୍ କରୁଥାଏ । ସେମାନଙ୍କୁ ଦେଖି ସେ ଭୟଭୀତ ହୋଇ ପଡିଲା । ସେଇ ଚୋରମାନେ ପାଖ ଗ୍ରାମରୁ ଚୋରି କରିଥିଲେ । ତାଙ୍କ ଟଙ୍କାଥଳୀ ମଧ୍ୟରୁ ଗୋଟିଏ ରାସ୍ତାରେ ଖସି ପଡିଥିଲା । ସେମାନେ ଯେତେବେଳେ ଏହା ଜାଣିବାକୁ ପାଇଲେ, ଖୋଜି ଖୋଜି ଆସୁଥିଲେ ଓ ବୀରବାହୁ ହାତରେ ସେମାନେ ଥଳୀଟିକୁ ଦେଖିଲେ ।

ଚୋର ଦୁଇଜଣ ବୀରବାହୁ ପାଖକୁ ଆସିଲେ ଓ ଧମକ ଦେଇ କହିଲେ: ''ଚୁପ୍ ଚାପ୍ ସେ ଥଳୀ ଆମକୁ ଦେଇ ଦେ । ଆମେ ଏତେ ବୁଦ୍ଧି ଖର୍ଚ୍ଚ କରି ଚୋରି କଲୁ, ଏତେ ସାହସ ଦେଖାଇଲୁ,

ଆଉ ତୁ ତା'କୁ ମାରିନେବାକୁ ବସିଛୁ ।''

ବୀରବାହୁ ଡରରେ ଥରହର ହୋଇ ସେ ଥଳୀ ଚୋରଙ୍କ ହାତକୁ ବଢ଼ାଇ ଦେଲା ଓ କହିଲା, ''ଦେଖ ଡାକୁମାନେ, ମୁଁ ଆଦୌ ଜାଣିନାହିଁ ଯେ ତୁମେମାନେ ଏହାର ମାଲିକ । ମୁଁ ସନ୍ନ୍ୟାସ ନେବା ପାଇଁ ମଠ ଅଭିମୁଖରେ ବାହାରି ଥିଲି । ଏତିକିବେଳେ ରାସ୍ତାରେ ମୋତେ ଏଇ ଥଳୀ ମିଳିଗଲା । ଭାବିଲି, ମୋର କଷ୍ଟ ଦୂର କରିବା ପାଇଁ ବନଦେବୀ ମୋତେ ଏଇ ଥଳୀ ଉପହାର ଦେଲେ ।''

ତା' କଥାରେ ଚୋରଦୁହେଁ ଅଟ୍ଟହାସ୍ୟ କରି ଉଠିଲେ । ଏପରି ବୃଥା ଆଶା ଆଉ କେବେ କରିବ ନାହିଁ । ମୁଣ୍ଡରୁ ଏପରି ବିଚାର ବାହାର କରି ଦିଅ । ଦେଖ, ଏଠାରୁ ଡ଼ାହାଣ ଦିଗରେ ଗଲେ ସନ୍ନ୍ୟାସୀମାନଙ୍କର ମଠ ଦେଖାଯିବ । ସେମାନେ ଏବେ ଭିକ୍ଷା ମାଗିବାକୁ ବାହାରି ଯିବେଣି ।'' ଏପରି କହି ଚୋର ଦୁଇଜଣ ସେଠାରୁ ଚାଲିଗଲେ ।

ଚୋରଙ୍କ କଥା ଶୁଣି ବୀରବାହୁ ମନରେ ସନ୍ନ୍ୟାସୀମାନଙ୍କ ପ୍ରତି ଘୃଣା ଜାତ ହେଲା । ସେ ଭାବିଲା, ''ମୋତେ ଜମିଚାଷ କରି ଆସେ, ହଳ ଚଲାଇ ଆସେ, ବୁଲିବି କାହିଁକି ? ତା'ପୁଣି ନିଜର ଗୋଟିଏ ପେଟ ପୋଷିବା ପାଇଁ ? ଛି, ଏଇ ସନ୍ନ୍ୟାସୀମାନେ କିପରି ଲୋକ କେଜାଣି, ନିଜର ପେଟ ପୋଷିବା ପାଇଁ ଅନ୍ୟ କିଛି କାମ ନ କରି ଭିକ୍ଷା ମାଗି ବୁଲୁଛନ୍ତି !'' ଏପରି ଚିନ୍ତା କରି ସେ ତୁରନ୍ତ ଘରକୁ ଫେରିଗଲା ।

ବୀରବାହୁର ମା' ଯେତେବେଳେ ଲକ୍ଷ୍ୟ କଲେ ଯେ ପୁଅ ଖୁବ୍ ବିଚଳିତ ମନେ ହେଉଚି ସେ ତା'କୁ ପଚାରିଲେ, ''ଆରେ ବୀର, କଥା କ'ଣ ? ଏତେ ବ୍ୟସ୍ତ କାହିଁକି ? କ'ଣ ଭାବୁଛୁ ?''

ଯାହା ସବୁ ଘଟିଥିଲା, କିଛି ଗୋପନ ନ ରଖି ସେ ମା'ଙ୍କ ଆଗରେ କହିଲା । ମା' ତାକୁ ଆଶ୍ୱାସନା ଦେଇ କହିଲେ, ''ଭଲ ହେଲା, ଶେଷରେ ଭଗବାନ ତତେ ଠିକ୍ ବାଟ ଦେଖାଇଲେ । ଜାଣିଛୁ, ସନ୍ନ୍ୟାସୀମାନେ କିପରି ଜୀବନ ବିତାନ୍ତି । ଆମ ପରି ଗୃହସ୍ଥମାନଙ୍କ ଦୟାରେ ସେମାନେ ବଞ୍ଚନ୍ତି । ଆମେ ନିର୍ମଳ ମନରେ ଯେତିକି ଦେଉ, ସେତିକି ଗ୍ରହଣ କରନ୍ତି । ମନେ ରଖ, ଦେବା ଲୋକର ସ୍ଥାନ ସବୁବେଳେ ନେବା ଲୋକଠାରୁ ଉପରେ, ସମାଜ ଦେବା ଲୋକକୁ ସମ୍ମାନ ଦେଖାଏ । ଆଉ କେବେ ଏପରି କଥା ମନକୁ ଆଣିବୁ ନାହିଁ । ବୁଝିଲୁ ?''



# ପ୍ରାଣ ଭୟ

ଘୋର ଜଙ୍ଗଲରେ ଗୋଟିଏ ଠେକୁଆ ରହୁଥିଲା । ଥରେ ତା'ର ପାଦ ଖସିଗଲା ଓ ସେ ଏକ ବଡ ଖାତରେ ପଡିଗଲା । ସେହି ଖାତରେ ଏତେ ବେଶି ପାଣି ନଥିଲା ଯେ ଠେକୁଆ ବୁଡିଯିବ । ଠେକୁଆ ଉପରକୁ ଆସିବାକୁ ବହୁତ ଚେଷ୍ଟା କଲା । ମାତ୍ର ତା'କୁ କୌଣସି କୂଳ କିନାରା ମିଳୁ ନ ଥାଏ ।

ବେଳକୁ ବେଳ ତା'ର ମନ ଦବିଗଲା । ସେ ଜାଣି ପାରିଲା ଯେ, ବାହାରକୁ ବାହାରିବା ପାଇଁ କୌଣସି ରାସ୍ତା ନାହିଁ ଓ ତା'ର ମୃତ୍ୟୁ ନିଶ୍ଚିତ । ସେ ଏଇ ଚିନ୍ତାରେ ମନମାରି ବସିଥାଏ । ଏତିକିବେଳେ ସେ ବାଟ ଦେଇ ଦୁଇଟି ଠେକୁଆ ଓ ଗୋଟିଏ ମାଙ୍କଡ ଯାଉଥିଲେ ଓ ସେମାନେ ଠେକୁଆର ଏପରି ଦୁର୍ଦ୍ଦଶା ଦେଖି ପାରିଲେ । ସେହି ତିନିଜଣ ଏକାଠି ମିଶି ଠେକୁଆକୁ ଉପରକୁ ଆଣିବାକୁ ଖୁବ୍ ଚେଷ୍ଟା କଲେ । ମାତ୍ର ସେମାନଙ୍କର ପ୍ରଚେଷ୍ଟା ମଧ୍ୟ ବିଫଳ ହେଲା । ଖାତରେ ପଡିଥିବା ଠେକୁଆ ସେମାନଙ୍କୁ କହିଲା: ''ତୁମ ମାନଙ୍କର ସାହାଯ୍ୟ ମୋ କାମରେ ଆସିଲା ନାହିଁ । ତୁମେ ମାନେ ଏବେ ଏଠାରୁ ଚାଲିଯାଅ ।'' ସେମାନେ ସେଠାରୁ ମନଦୁଃଖରେ ବିଦାୟ ନେଲେ ।

କିଛି ସମୟ ପରେ ଗୋଟିଏ ଶିଆଳ ଚିତ୍କାର କରି କରି ସେଇ ଖାତ ଆଡକୁ ଆସିଲା ଶିଆଳର ଚିତ୍କାର କାନରେ ପଡିବା ମାତ୍ରେ ଠେକୁଆ ଭୟରେ ଥରିବାକୁ ଲାଗିଲା । ତା'ର ମନେହେଲା, ଏବେ ତା'ର ବଞ୍ଚିବା ଅସମ୍ଭବ । ଜୀବନ ବିକଳରେ ସେ ଏକ କୁଦା ମାରିଲା । ବାସ୍ ଆଉ କ'ଣ, ସେ ଏବେ ଖାତ ଉପରେ ! ଆଖି ପିଛୁଳାକେ ସେ ସେଠାରୁ ଉଭାନ୍ ହୋଇଗଲା ।

ଠେକୁଆକୁ ଏତେ ଜୋର୍‌ରେ ଧାଇଁ ପଳାଉଥିବା ଦେଖି ଉକ୍ତ ଠେକୁଆ ଦୁଇଟି ଓ ମାଙ୍କଡ ଚକିତ ହୋଇଗଲେ ।



# କୋରାପୁଟ

ପ୍ରକୃତିକୁ ଭଲ ପାଉଥିବା ଲୋକ କୋରାପୁଟକୁ ନିଶ୍ଚେ ଭଲ ପାଇବେ । ଏହି ଜିଲ୍ଲାରେ ପୁରି ରହିଛି ପ୍ରକୃତିର ସୌନ୍ଦର୍ଯ୍ୟ । ୨,୯୯୦ ଫୁଟ ଉଚ୍ଚରେ ଏହା ଦଣ୍ଡକାରଣ୍ୟ ଜଙ୍ଗଲ ପାଖରେ ଅବସ୍ଥିତ ।

କୋରାପୁଟ ଜିଲ୍ଲାର ବୈବସାୟୀକ ପ୍ରାଣ କେନ୍ଦ୍ର ଜୟପୁର ସହରରେ ରହିଛି, ପ୍ରପାତ, ଜଙ୍ଗଲ-ବଣ୍ୟଜନ୍ତୁଙ୍କ ବାସସ୍ଥଳ । ଜୟପୁର ସହରଠାରୁ କୋରାପୁଟର ଯେକୌଣସି ସ୍ଥାନକୁ ଜଣେ ଖୁସୀରେ ବୁଲିଯାଇପାରିବ ।

ଡୁମ୍‌ଡୁମା, ଏକ ସୁନ୍ଦର ପ୍ରପାତ । ଏହା ମାଛକୁଣ୍ଡ ନଦୀ ଉପରେ ଅବସ୍ଥିତ ଓ ଜୟପୁରଠାରୁ ସତୁରୀ କିଲୋମିଟର ଦୂରରେ ଅବସ୍ଥିତ ।

ଆଉ ଏକ ପର୍ଯ୍ୟଟନ ସ୍ଥଳ ହେଉଛି ଗୁପ୍ତେଶ୍ୱର । ଏଠାରେ ଏକ ସୁନ୍ଦର ଗୁମ୍ଫା ରହିଛି, ଯାହା ପ୍ରଭୁ ଶିବଙ୍କ ପ୍ରତି ନିବେଦିତ । ଏହା ଜୟପୁର ଠାରୁ ୫୮ କି.ମି. ଦୂରରେ ଅବସ୍ଥିତ ।

କୋରାପୁଟ ଜିଲ୍ଲାର ମୁଖ୍ୟ ସ୍ଥଳୀ ରାୟଗଡା, ବ୍ରହ୍ମପୁରରୁ କୋରାପୁଟ ଯିବା ରାସ୍ତାରେ ପଡିଥାଏ । ଏହି ସ୍ଥାନଟି ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ପ୍ରସିଦ୍ଧ । ଏଠାରୁ ୧୩୪ କି.ମି. ଦୂରରେ ଅବସ୍ଥିତ ମନୋଝୋମ୍ବା, ଯାହାକି ତିନୋଟି ନଦୀର ସଂଗମ ସ୍ଥଳୀ । ଏହାକେବଳ ପ୍ରାକୃତିକ ଉଦ୍ୟାନର ଜୟପୁର ନୁହେଁ, ବରଂ ଏକ ପବିତ୍ର ସ୍ଥଳ ଭାବେ କଥିତ । କୋରାପୁଟ ଅନେକ ଜନଜାତିଙ୍କ ବାସସ୍ଥଳୀ ।

## ତୁମ ପାଇଁ ପହେଲି !

୧୪ ବର୍ଷ ବୟସ ପର୍ଯ୍ୟନ୍ତ ଉଦ୍ଦିଷ୍ଟ

୧. କୋରାପୁଟର ଶସ୍ୟ ଶାମଳା କ୍ଷେତ୍ରରେ ଏକ ଉଡାଜାହାଜ ଇଂଜିନ୍ କାରଖାନାଅଛି । ତାହା କେଉଁ ଜାଗାରେ ଅବସ୍ଥିତ ?

--------------------------

୨. ଏସିଆର ସର୍ବବୃହତ୍ତ ଆଲ୍‌ମୁନିୟମ୍ କମ୍ପାନୀ କୋରାପୁଟର କେଉଁ ସ୍ଥାନରେ ଅବସ୍ଥିତ ?

--------------------------

୩. ନାଗାବଳୀ ନଦୀ ପାଖରେ ଦୁଇଟି ସୁନ୍ଦର ପ୍ରପାତ ରହିଛି । ଏଠାରେ ଦୁଇଟି ସୁନ୍ଦର ପଥର ଏକ ଅପୂର୍ବ ଆକାରରେ ଅବସ୍ଥିତ । ତାହାର ନାମ କୁହ ?

--------------------------

ତୁମର ଉତ୍ତର ଶୂନ୍ୟସ୍ଥାନ ଗୁଡିକରେ ସୁନ୍ଦର ସୁନ୍ଦର ଅକ୍ଷରରେ ଲେଖି କୁପନ ପୂରଣ କରି ଦିଆଯାଇଥିବା ନିମ୍ନ ଠିକଣାରେ ପଠାଇବ ।

**ଓ.ଟି.ଡି.ସି. ପହେଲି ପ୍ରତିଯୋଗିତା**
**ଚାନ୍ଦମାମା ଇଣ୍ଡିଆ ଲିମିଟେଡ୍**
**ନମ୍ବର ୮୨, ଡିଫେନ୍‌ସ ଅଫିସ୍‌ର କଲୋନୀ**
**ଇକାଟୁଥାଙ୍ଗାଲ୍, ଚେନ୍ନାଇ - ୬୦୦ ୦୯୭**

ନାମ : ----------------------------

ବୟସ : ----------------------------

ଠିକଣା: ----------------------------

ପିନ୍ ---------- ଫୋନ୍ ----------

Winners picked by Orissa Tourism in each contest will be eligible for **3 days, 2-night** stay at any of the **OTDC Panthanivas**, upto a maximum of four members of a family. Only original forms will be entertained. The competition is not open to CIL and Orissa Tourism family members. [illegible] Paryatan Bhaven, Bhubaneswar-751 014. Ph: (0674) 432177, Fax : (0674) [illegible], E-mail : ortour@sancharnet.in. Website : Orissa-tourism.com



# ଯକ୍ଷ ପର୍ବତ

(୧୩)

*(ଖଡ୍‌ଗ, ଜୀବଦତ୍ତ ଏବଂ ମଣିଭୂଷଣ ଯେଉଁଠାରେ ବିଶ୍ରାମ ନେଉଥିଲେ, ସେଠାକୁ ଗୋଟିଏ ରାକ୍ଷସୀ ଆସିଲା । ତା'ର ପତିଠାରୁ ଜୀବଦତ୍ତ ଯକ୍ଷପର୍ବତ ସମ୍ପର୍କରେ ଅନେକ ରହସ୍ୟ ଜାଣିବାକୁ ପାଇଲେ । ଅର୍ଦ୍ଧରାତ୍ର ବେଳକୁ ମଣିଭୂଷଣ ବାହାର ପାଦଶବ୍ଦ ଶୁଣି ଜାଗି ଉଠିଲା ଓ ଭୟଭୀତ ହୋଇ ଚିତ୍କାର କଲା । ଏହାପରେ ...)*

ମଣିଭୂଷଣର ଚିତ୍କାର ଶୁଣି ଜୀବଦତ୍ତଙ୍କ ନିଦ୍ରା ଭାଙ୍ଗିଗଲା ଓ ସେ ଚେତି ଉଠିଲେ । ଜୀବଦତ୍ତ ମଣିଭୂଷଣକୁ ଧୈର୍ଯ୍ୟ ପ୍ରଦାନ କରି କହିଲେ: ''ମଣିଭୂଷଣ, ପାଟି ବନ୍ଦ କର । ଭୟ କରିବାର କିଛି ନାହିଁ । ଯେଉଁ ଦୁଇ ରାକ୍ଷସୀ ଆସିଥିଲେ, ସେମାନେ ଜାଣିଥିଲେ ଯେ ତୁମେ ଯକ୍ଷ ମଣିରଂଜିତ ନୁହଁ ।

ସେମାନେ ଏକଥା ମଧ୍ୟ ଜାଣିଛନ୍ତି ଯେ ତୁମେ ତା'ର ସେବକ, କାରଣ ମୁଁ ସେମାନଙ୍କୁ ତୁମକୁ ଚିହ୍ନାଇ ଦେଲି । ସେମାନେ ମୋର କଥାକୁ ବିଶ୍ୱାସ କଲେ ଓ ଏଠାରୁ ଚାଲିଗଲେ ।''

ଏହାପରେ ମଣିଭୂଷଣ ଶୋଇବାକୁ ବହୁତ ଚେଷ୍ଟାକଲା, କିନ୍ତୁ ନିଦ ଆସିଲା ନାହିଁ । ସେ ଚାହିଁ ରହିଲା । ସକାଳ ହେବାକ୍ଷଣି ଖଡ୍‌ଗ ଓ ଜୀବଦତ୍ତ ଉଠିପଡିଲେ, ତା'ପରେ ସେମାନେ ସମସ୍ତେ ନୌକା ନିକଟକୁ ଗଲେ ଓ ନୌକାରେ ବସିଲେ, ମଣିଭୂଷଣ ଧୀରେ ଧୀରେ ନୌକା ଚଳାଇଲା ।

ପ୍ରାୟ ଅଧ ଘଣ୍ଟା ପରେ ନୌକା କୂଳରେ ଲଗାଗଲା । ମଣିଭୂଷଣ ନୌକାରୁ ଓହ୍ଲାଇ ପଡି ସେ ଦୁଇଜଣଙ୍କୁ କହିଲା, ''ଏହା ହେଉଛି ଯକ୍ଷପର୍ବତ । ଏବେ ଆପଣମାନେ ତଳକୁ ଆସି ପାରନ୍ତି । ମୋର ମୁନିବ ମଣିରଂଜିତ ଆପଣ ଦୁହିଁଙ୍କୁ ଭେଟିବା ପାଇଁ ସ୍ୱୟଂ ଆସିଛନ୍ତି ।''

ଖଡ୍‌ଗ ଓ ଜୀବଦତ୍ତ ତଳକୁ ଆସିଲେ ଓ ସେହି ପର୍ବତକୁ ଭଲ ଭାବେ ନିରୀକ୍ଷଣ କଲେ । ସେଠାକାର ଏକ ଉଚ୍ଚ ଚଟାଣ ଉପରେ ଜଣେ



ଯୁବକ ଠିଆ ହୋଇଥିଲା, ତା'ର ହାତରେ ଗୋଟିଏ ଛୋଟ ଗଦା ଥିଲା । ସେହି ଯୁବକ ଅପଲକ ନେତ୍ରରେ ଖଡ୍‌ଗ ଓ ଜୀବଦତ୍ତଙ୍କୁ ଦେଖୁଥିଲା ।

ତିନିଜଣ ସେହି ଯୁବକ ପାଖରେ ପହଞ୍ଚିଲେ । ଖଡ୍‌ଗବର୍ମା ଓ ଜୀବଦତ୍ତ ସେହି ଯୁବକଙ୍କୁ ତୀକ୍ଷ୍ଣ ଦୃଷ୍ଟିରେ ଦେଖୁଥିବା ସମୟରେ ସେ ତା'ଙ୍କୁ କହିଲା: ''ଖଡ୍‌ଗ ଓ ଜୀବଦତ୍ତ, ତୁମ ଦୁଇ ଜଣଙ୍କର ଦୁଃସାହସ ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଛି । କଥାରେ ଅଛି, ବୁଦ୍ଧି କର୍ମାନୁସାରିଣୀ । ତୁମର ବିଚାର ପ୍ରତି ମୋର ଦୟା ଜାତ ହେଉଛି ।''

ଜୀବଦତ୍ତ ମଣିରଂଜିତକୁ ମଥାରୁ ଶିଖ ଯାଏଁ ଭଲଭାବେ ନିରୀକ୍ଷଣ କରିବା ପରେ କହିଲେ: ''ମଣିରଂଜିତ, ପଦ୍ମାବତୀଙ୍କ ମତରେ ଏଠାରେ ଥିବା ପଥର ରଥକୁ ଯିଏ ସ୍ଥାନଚ୍ୟୁତ କରି ପାରିବ, ସେ ହେଉଛି ମହାବୀର । ଆଉ ତୁମର ଯୋଜନା ହେଉଛି, ଏଠାକୁ ଯିଏ ସେହି କାମରେ ଆସିବ ତୁମେ ତା'କୁ ହତ୍ୟା କରିବ । ଏବେ ତୁମର ସେହି ଯୋଜନା ତୁମ ମୃତ୍ୟୁର କାରଣ ହେବ । କେଉଁଠାରେ ଅଛନ୍ତି ସେହି ଦୁଇ ରାଜକୁମାରୀ ପଦ୍ମାବତୀ ଓ ବସନ୍ତକୁମାରୀ ।''

ତା'ଙ୍କ କଥା ଶୁଣି ମଣିରଂଜିତ କ୍ରୋଧିତ ହୋଇ ଉଠିଲା । ସେ ଗଦା ଉଠାଇବାକୁ ତତ୍ପର ହେବାରୁ ଖଡ୍‌ଗବର୍ମା ତରବାରୀ ଉପରେ ନିଜର ହାତମୁଠା ରଖି କହିଲେ: ''ମଣିରଂଜିତ, ଗଦା ସେତେବେଳେ ଉଠାଇବ, ଯେତେବେଳେ ଆମେ ପ୍ରସ୍ତର ରଥକୁ ସ୍ଥାନଚ୍ୟୁତ କରିବାରେ ବିଫଳ ହେବୁ । ଯଦି ଆମେ ଅସଫଳ ହେବୁ ତେବେ ହୁଏତ ପଦ୍ମାବତୀ ତୁମକୁ ମହାବୀର ମନେ କରି ବିବାହ କରିପାରନ୍ତି । ପ୍ରଥମେ ଆମକୁ ସେହି ରଥ ଦେଖାଇ ଦିଅ ।''

ମଣିରଂଜିତ କିଛି କହିବାକୁ ଯାଉଥିବା ସମୟରେ, ମଣିଭୂଷଣ କହିଲା: ''ଉତ୍ତେଜିତ ହୋଇ କିଛି କର ନାହିଁ ମଣିରଂଜିତ, ପ୍ରଥମେ ଏହି ଯୁବକ ଦୁଇଜଣଙ୍କୁ ରଥ ପାଖକୁ ନେଇଯାଅ ।'' ମଣିରଂଜିତ ନିଜର କ୍ରୋଧ ସମ୍ଭାଳି ନେଇ ତିନିଜଣଙ୍କୁ ନିଜ ସହିତ ଆସିବାକୁ ଦେଲା ।

କିଛି ସମୟପରେ ସେମାନେ ଏକ ସମତଳ ପ୍ରଦେଶରେ ପହଞ୍ଚିଲେ । ଏହି ଅଞ୍ଚଳ ଫୁଲ ଓ ଫଳରେ ଭରା ବୃକ୍ଷରେ ଭରପୁର ଥିଲା । ସେଠାକାର ଉଦ୍ୟାନ ଉପବନ ନିକଟରେ ପାଖାପାଖି ଦୁଇଟି ରଥ ଆକୃତିର ଭବନ ଥିଲା । ସେଥିମଧ୍ୟରୁ ଗୋଟିଏ ଭବନ ଉପରେ ଦୁଇଜଣ ଯୁବତୀ ଠିଆ ହୋଇଥିଲେ ଓ ସେମାନେ ସେଠାରେ ଥାଇ ଖଡ୍‌ଗ ଓ ଜୀବଦତ୍ତଙ୍କୁ ଦେଖୁଥିଲେ । ଏହି ଦୁଇଜଣଙ୍କୁ ଦେଖି ସେମାନଙ୍କ ମୁଖମଣ୍ଡଳରେ ଆନନ୍ଦର ଲହରୀ ଖେଳିଗଲା ।



ଜୀବଦତ୍ତ ସେହି ଯୁବତୀ ଦୁଇଜଣଙ୍କୁ ଦେଖି କହିଲା: ''ମଣିରଂଜିତ, ଏମାନେ ବସନ୍ତକୁମାରୀ ଓ ପଦ୍ମାବତୀ ହୋଇଥିବେ କି' କ'ଣ ?''

''ହଁ, ତୁମ ଦୁଇଜଣଙ୍କର ପରାକ୍ରମ ଦେଖିବା ପାଇଁ ସେମାନେ ଅଧୀର ହୋଇ ପଡିଛନ୍ତି । ତେଣୁ ସେମାନେ ଏଠାରେ ଠିଆ ହୋଇଛନ୍ତି ।'' ଏହା କହି ମଣିରଂଜିତ ବୁଲି ପଡିଲା ଓ ପ୍ରସ୍ତର ରଥ ଦେଖାଇ ଦେଇ ଦାନ୍ତ କଡମଡ କରି କହିଲା, ''ଏଇ ହେଉଛି ପ୍ରସ୍ତର ରଥ ।''

ସେମାନେ ଦେଖିଲେ ଯେ, ରଥର ଉଚ୍ଚତା କୋଡିଏ ହାତ ହେବ । ଏହା ସହିତ ପର୍ବତ ଲାଗି କରି ଅଛି । ଯେତେବେଳେ ସେମାନେ ଦୁହେଁ ରଥ ପାଖକୁ ଯିବାକୁ ବାହାରିଲେ ମଣିରଂଜିତ ମଣିଭୂଷଣକୁ ଖୋଜିଲା । ମାତ୍ର ସେତେବେଳକୁ ମଣିଭୂଷଣ ଆଖପାଖରେ ନ ଥିଲା ।

କିଛି ନ କହି ମଣିଭୂଷଣ ସେଠାରୁ ଅନ୍ତର୍ହିତ ହୋଇଯିବାରୁ ସେ ଆଶ୍ଚର୍ଯ୍ୟ ହୋଇଗଲା । ତା'ପରେ ମଣିରଂଜିତ ରଥ ପାଖକୁ ଗଲା । ସେତେବେଳକୁ ଖଡ୍ଗ ଓ ଜୀବଦତ୍ତ ରଥ ଚାରିପାଖରେ ବୁଲି, ତା'କୁ ଭଲଭାବେ ଦେଖି ସାରିଥିଲେ ।

ଜୀବଦତ୍ତ ନଇଁପଡି ରଥର ନିମ୍ନଭାଗକୁ ଦେଖାଇ ଖଡ୍ଗବର୍ମାଙ୍କୁ କହିଲେ: ''ଖଡ୍ଗ, ଏହି ରଥ ପାହାଡ ସହିତ ସଂଯୁକ୍ତ ନୁହେଁ । ଏଠାରେ ଥିବା ପଥରରେ ଏହି ରଥ ନିର୍ମିତ ହୋଇଛି । ନିମ୍ନଭାଗରୁ କ୍ଷୀଣ ଆଲୋକରେଖା ଦୃଶ୍ୟମାନ ହେଉଛି ଓ ଅସ୍ପଷ୍ଟ ଧ୍ୱନି ମଧ୍ୟ ଶୁଭୁଛି । ମନେ ହେଉଛି, କିଛି ମନୁଷ୍ୟ ପରସ୍ପର ଆଲୋଚନା କରୁଛନ୍ତି ।''

ଜୀବଦତ୍ତଙ୍କ କଥା ଶୁଣିବା ମାତ୍ରେ ମଣିରଂଜିତ ଭୟଙ୍କର ଭାବେ ଉତ୍‌କ୍ଷିପ୍ତ ହୋଇ ଉଠିଲା, ସତେ ଯେପରି ତା'କୁ ବିଷଧର ସର୍ପ ଦଂଶନ କରିଛି । ତା'ର ମୁଖରୁ ଅନାୟସରେ ବାହାରି ଗଲା, ''ରଥର ନିମ୍ନଭାଗରୁ ଆଲୋକ ଆସୁଛି ଓ ସେଠାରୁ ଲୋକମାନଙ୍କର କଥା ଶୁଭୁଛି । ଅସମ୍ଭବ ! ଏହା ଏକାନ୍ତ ଅସମ୍ଭବ !''

''ଅସମ୍ଭବ କିପରି ହେବ ? ପାହାଡରେ ଯେଉଁ ହୀରା, ନୀଳା ଅଛି, ତା'କୁ ଖୋଳି ବାହାର କରୁଥିବା ତୁମର ସବୁ ଗୋଲାମମାନେ କ'ଣ ମୂକ ହୋଇଥିବେ ?'' ଜୀବଦତ୍ତ ରୁକ୍ଷ ସ୍ୱରରେ କହିଲେ ।

ମଣିଭୂଷଣ ଗୋଟିଏ ମୂହୂର୍ତ୍ତ ପାଇଁ ନିଶ୍ଚେଷ୍ଟ ହୋଇଗଲା । ତା'ପରେ ସେ ନିଜକୁ ସମ୍ଭାଳି ନେଇ ତା'କୁ ପଚାରିଲା, ''ତୁମେ କିପରି ଏହି ରହସ୍ୟ ଜାଣିଲ ? କିଏ ତୁମକୁ ଏହି ରହସ୍ୟ କହିଛି ? ଏବେ ଜାଣି ପାରିଲି, ମଣିଭୂଷଣ ତୁମକୁ ଏହି ରହସ୍ୟ ବତାଇଛି ।''

''ବିଚରା ମଣିଭୂଷଣ ଉପରେ ସନ୍ଦେହ କାହିଁକି କରୁଛ ? ଆମେ ତ ଏବେ ଯାଏଁ ବୁଝି ପାରୁନାହୁଁ ଯେ, ସେ ତୁମର ସେବକ କିମ୍ବା ବନ୍ଧୁ । ମୁଁ ମୋର ଦିବ୍ୟ ଦୃଷ୍ଟିରେ ଯକ୍ଷ ପର୍ବତର ସବୁ ରହସ୍ୟ ଜାଣି ସାରିଛି ।'' ଜୀବଦତ୍ତ ହସି ହସି କହିଲେ ।

ମଣିରଂଜିତ କ୍ରୋଧରେ ତମତମ ହୋଇ ଉଠିଲା । ସେ କହିଲା, ''ଜୀବଦତ୍ତ, ବେଶୀ ବକ୍ ବକ୍ ହୁଅନା । ଅଯଥା ବାହାଦୁରୀ ଦେଖାନା । ରଥକୁ ହଟାଇବାର ଚେଷ୍ଟାରେ ଲାଗିପଡ । ଦେଖିବା, ତୁମେ ଏହି କାମ କରି ପାରୁଛ କି ନାହିଁ ! ତୁମର ଶକ୍ତି, ସାମର୍ଥ୍ୟ ଦେଖିବା ପାଇଁ ରାଜକୁମାରୀ ପଦ୍ମାବତୀ ଓ ବସନ୍ତକୁମାରୀ ଭବନ ଉପରେ ଅପଲକ ନେତ୍ରରେ ଅପେକ୍ଷା କରିଛନ୍ତି ପରା !''

ଜୀବଦତ୍ତ ଖଡ୍‌ଗବର୍ମାଙ୍କୁ ସଙ୍କେତ ଦେଲେ ଓ ରଥ ଆକୃତିର ଦୁଇ ଭବନକୁ ଦେଖାଇ ମଣିରଂଜିତକୁ କହିଲେ, ''ଯେଉଁ ଭବନ ଉପରେ ଦୁଇ ରାଜକୁମାରୀ ଠିଆ ହୋଇଛନ୍ତି, ତା' ପାଖରେ ଥିବା ଭବନ ତୁମର ନିବାସ ନୁହେଁ କି ?''

''ହଁ, ତୁମେ ସେ କଥା କାହିଁକି ପଚାରୁଛ ?''

''ସେହି ଭବନ ଏବେ କିଛି କ୍ଷଣ ମଧ୍ୟରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଧରାସାୟୀ ହେବାକୁ ଯାଉଛି । ହେଇ ଦେଖ !''- ଏପରି କହି ଜୀବଦତ୍ତ ମନ୍ତ୍ରୋଚ୍ଚାରଣ କଲେ ଓ ନିଜର ଦଣ୍ଡ ପ୍ରସ୍ତର ଉପରେ ରଖିଲେ । ତା'ପରେ ତା'ଙ୍କ ପାଖରେ ରଥକୁ ପ୍ରହାର କଲେ ।

ବାସ୍, ଦେଖୁ ଦେଖୁ ରଥ ନିଜ ସ୍ଥାନରୁ ଟଳମଳ ହେଲା । ଖୁବ୍ ଜୋର୍‌ରେ ନିମ୍ନକୁ ଝୁଙ୍କି ପଡିଲା ଓ ମଣିରଂଜିତ ଭବନରେ ଧକ୍କା ଖାଇଲା । ସେହି ଭବନ ଓ ରଥ ଖଣ୍ଡ ଖଣ୍ଡ ହୋଇ ବିଚ୍ଛାଡି ପଡିଲା । ସେଥିରେ କେତେକ ପ୍ରସ୍ତର ଖଣ୍ଡ ଉଦ୍ୟାନ ବନରେ ଯାଇ ପଡିଲା ।

ନିଜ ଚକ୍ଷୁ ସମ୍ମୁଖରେ ସର୍ବନାଶର ଏହି କରାଳ ଦୃଶ୍ୟ ଦେଖି ମଣିରଂଜିତର ଶରୀର କମ୍ପି ଉଠିଲା । ସେ ଆବାକ୍ ହୋଇ ଚାହିଁ ରହିଲା । ସେ ସ୍ୱପ୍ନରେ



ମଧ ଭାବି ନଥିଲା ଯେ, ଏପରି କେବେ ଘଟିପାରେ । ସେ ନିଜକୁ ସମ୍ଭାଳି ନେଇ ଜୀବଦତ୍ତଙ୍କୁ ପ୍ରହାର କରିବାକୁ ନିଜର ଗଦା ଉଠାଇଲା । କିନ୍ତୁ ଏତିକିବେଳେ ଖଡ୍‌ଗବର୍ମା ତରବାରୀ ବାହାର କଲେ ଓ ତା'ର ମୁକାବିଲା କଲେ ।

ଜୀବଦତ୍ତ ଖୁସିରେ ପାଗଳ ହୋଇ ଉଠିଲେ । ସେ ଗନ୍ଧର୍ବ ବସୁମତୀଙ୍କ ଠାରୁ ପ୍ରାପ୍ତ କାଂସ୍ୟ ବାଦ୍ୟ ବାହାର କରି ଖୁବ୍ ଜୋର୍‌ରେ ବଜାଇଲେ । ପ୍ରସ୍ତର ରଥ ହଟି ଯିବାରୁ ଏକ ଗାତ୍ର ଦୃଷ୍ଟିଗୋଚର ହେଲା । ସେଥି ମଧ୍ୟରୁ କେତେଜଣ ରାକ୍ଷସ ଓ ଗନ୍ଧର୍ବ ଉପରକୁ ଆସିଲେ । ସେମାନେ ଜୋର୍‌ରେ ଚିତ୍କାର କରୁଥିଲେ ।

ଜୀବଦତ୍ତ ସେମାନଙ୍କୁ ନୀରବ ରହିବାକୁ ଅନୁରୋଧ କରି କହିଲେ: ''ଏବେଠାରୁ ତୁମେ ସମସ୍ତେ ସ୍ୱାଧୀନ । ତୁମ୍ଭେମାନେ ଏବେ ସ୍ୱଗୃହକୁ ଫେରି ଯାଇପାର ।'' ତା'ପରେ କାଂସ୍ୟ ବାଦ୍ୟ ଉପରକୁ ଉଠାଇ କହିଲେ: ''ଏହି କାଂସ୍ୟ ବାଦ୍ୟ ମୋତେ ବସୁମତି ନାମକ ଏକ ଗନ୍ଧର୍ବ ଦେଇଥିଲେ । ତୁମ୍ଭମାନଙ୍କ ମଧ୍ୟରେ କେହି ଗନ୍ଧର୍ବ ଥିଲେ ଆଗକୁ ଆସି, ମୋ ଠା'ରୁ ଏହି ବାଦ୍ୟ ନେଇଯାଅ ।''

ସେମାନଙ୍କ ମଧ୍ୟରୁ ଜଣେ ଗନ୍ଧର୍ବ ଆଗକୁ ଆସିଲା । ଜୀବଦତ୍ତଙ୍କଠାରୁ ବାଦ୍ୟ ଆଣି ଆନନ୍ଦରେ ଚୁମା ଦେଲା । ବିମୁକ୍ତ ଗନ୍ଧର୍ବ ଓ ରାକ୍ଷସମାନେ ଜୀବଦତ୍ତଙ୍କୁ କିଛି କିହବାକୁ ଯାଉଥିବା ବେଳେ ମଣିରଂଜିତର ଆର୍ତ୍ତନାଦ ଶୁଣାଗଲା । ଜୀବଦତ୍ତ ପଛକୁ ବୁଲି ଚାହିଁଲେ । ଖଡ୍‌ଗବର୍ମା ମଣିରଂଜିତକୁ ଆହତ କରିଥିଲେ ଓ ତଳେ ପଡିଥିବା ମଣିରଂଜିତର ଗଳା ପାଖରେ ତରବାରୀ ରଖି ଗର୍ବର ସହିତ ଠିଆ ହୋଇଥିଲେ ।

ଏହି ଦୃଶ୍ୟ ଦେଖି ଜୀବଦତ୍ତ ଜୋର୍‌ରେ ହସି



ଉଠିଲେ । ''ଜୀବଦତ୍ତ, ଏହି ଦୁଷ୍ଟ ମଣିରଂଜିତକୁ ହତ୍ୟା କରିବି ଅବା ଛାଡିଦେବି ? ଏହି ପାପୀ ରାଜକୁମାରୀ ମାନଙ୍କୁ ଅପହରଣ କରି ସେମାନଙ୍କୁ କେବଳ କଷ୍ଟ ଦେଇନାହିଁ, ସେମାନଙ୍କ ପିତାମାତାଙ୍କୁ ମଧ୍ୟ ମାନସିକ ନିର୍ଯ୍ୟାତନା ଦେଇଛି ।''

ରାଜକୁମାରୀ ପଦ୍ମାବତୀ ଓ ବସନ୍ତକୁମାରୀ ସେଠାରେ ପହଞ୍ଚିଲେ । ବସନ୍ତକୁମାରୀ ମଣିରଂଜିତକୁ ଦେଖି କହିଲେ: ''ମୁଁ ପ୍ରତିଜ୍ଞା କରିଥିଲି ଯେ, ଯେଉଁ ବୀର ଏହି ନୀଚକୁ ହତ୍ୟା କରିବ, ମୁଁ ତା'କୁ ବିବାହ କରିବି । ଯଦି ଏହାର ମୃତ୍ୟୁ ମୁଁ ସ୍ୱଚକ୍ଷୁରେ ନ ଦେଖିବି, ତେବେ ଆଜୀବନ କୁମାରୀ ହୋଇ ରହିଯିବି ।''

ଖଡ୍‌ଗବର୍ମା ବସନ୍ତକୁମାରୀଙ୍କୁ ଧ୍ୟାନପୂର୍ବକ ଦେଖିଲେ । ତା'ଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଦେଖି ସେ ମୁଗ୍ଧ ହୋଇଗଲେ । ସେ ସ୍ପଷ୍ଟ ବୁଝିପାରିଲେ



ଯେ, ମଣିରଂଜିତକୁ ହତ୍ୟା ନ କଲେ ଏହି ସୁନ୍ଦରୀ ତା'ଙ୍କର ପତ୍ନୀ ହୋଇ ପାରିବେ ନାହିଁ । କିଛି ଚିନ୍ତା କରି ସେ ତରବାରୀ ଉଠାଇଲେ ଓ ତାଙ୍କ ଗଳାରେ ଭୁଷିବାକୁ ଗଲା ବେଳକୁ, କିଛି ଶବ୍ଦ ଶୁଭିଲା । ସମସ୍ତେ ଉପରକୁ ମଥା ଉଠାଇଲେ । ଶୁଭୁଥିଲା, ''ଅପେକ୍ଷା କର ।''

ହଂସ ଆକୃତିର ଏକ ବିମାନ ସମସ୍ତଙ୍କ ଆଗରେ ତଳକୁ ଓହ୍ଲାଇଲା । ତା'ମଧ୍ୟରୁ ଯକ୍ଷରାଜା ଓ ମଣିଭୂଷଣ ବାହାରିଲେ ।

ଯକ୍ଷରାଜା ସମସ୍ତଙ୍କୁ ଦେଖିବା ପରେ କହିଲେ, ''ଖଡ୍‌ଗ ଓ ଜୀବଦତ୍ତ, ଏହା ନିଃସନ୍ଦେହ ଯେ, ତୁମେ ଦୁଇଜଣ ଅସାମାନ୍ୟ ବୀର । ମଣିଭୂଷଣ ମୋତେ ସବୁ ବିବରଣୀ ଦେଇଛି । ଏହି ମଣିରଂଜିତ ଯକ୍ଷ ବଂଶର ଏକ କଳଙ୍କ । ତା'ରି ଯୋଗୁ ଯକ୍ଷ ବଂଶ ଆଜି ବଦନାମ ହୋଇଛି । ତା'କୁ ଛାଡିଦିଅ । ଜୀବିତ ହୋଇ ମଧ୍ୟ ସେ ମୃତ ସମାନ ।''

ଖଡ୍‌ଗବର୍ମା ଦ୍ୱନ୍ଦରେ ପଡିଲେ । ସେ ସ୍ଥିର କରି ପାରୁ ନଥିଲେ ଯେ, ମଣିରଂଜିତକୁ ମାରିବେ କିମ୍ବା ଛାଡିଦେବେ । ଏତିକିବେଳେ ଜୀବଦତ୍ତ କହିଲେ, ''ଖଡ୍‌ଗ, ଯକ୍ଷରାଜାଙ୍କ କଥା ଶୁଣିଲ କି ନାହିଁ ? ମଣିରଂଜିତକୁ କ୍ଷମା କରିଦିଅ ଓ ତା'ଙ୍କୁ ପ୍ରାଣଦାନ କର ।''

''ତେବେ ବୀରପୁର ରାଜକୁମାରୀଙ୍କ ପ୍ରତିଜ୍ଞା କଥା କ'ଣ ହେବ ?'' ଖଡ୍‌ଗବର୍ମା ରାଜକୁମାରୀଙ୍କୁ ସ୍ମିତ ହସି ଚାହିଁ କହିଲେ ।

ବସନ୍ତ କୁମାରୀ ଲଜ୍ଜାରେ ନଇଁଗଲେ ଓ ରାଜକୁମାରୀ ପଦ୍ମାବତୀଙ୍କ ପଛପଟେ ଲୁଚିଗଲେ । ଯକ୍ଷରାଜା ହସି ଦେଇ କହିଲେ, ''ମୁଁ ପ୍ରଥମରୁ କହି ସାରିଛି ଯେ ମଣିରଂଜିତ ଜୀବିତ ରହିଲେ ମଧ୍ୟ ମୃତ ସମାନ । ତେଣୁ ବସନ୍ତ କୁମାରୀଙ୍କ ପ୍ରତିଜ୍ଞାରେ କୌଣସି ବାଧା ଉପୁଜିବ ନାହିଁ । ତେଣୁ ସେ ଏଥିରେ ସନ୍ତୁଷ୍ଟ ହେବେ ବୋଲି ମୁଁ ମନେ କରୁଛି । ମୁଁ ଏବେ ସ୍ୱୟଂ ଉପସ୍ଥିତ ରହି ପ୍ରସ୍ତର ରଥ ସ୍ଥାନଚ୍ୟୁତ କରିଥିବା ଜୀବଦତ୍ତଙ୍କ ସହିତ ପଦ୍ମାବତୀଙ୍କର ଓ ଖଡ୍‌ଗବର୍ମାଙ୍କ ସହିତ ବସନ୍ତକୁମାରୀଙ୍କର ବିବାହ କରାଇବି । ଏବେ ପୁଷ୍ପମାଳା ନେଇ ଆସ ।''

ମଣିଭୂଷଣ ବିମାନରୁ ଚାରୋଟି ପୁଷ୍ପମାଳା ନେଇ ଆସିଲା । ଚାରି ଜଣଙ୍କ ହାତକୁ ଗୋଟିଏ ଗୋଟିଏ ମାଳା ବଢ଼ାଇ ଦେଲେ । ପଦ୍ମାବତୀ ଓ ଜୀବଦତ୍ତ ଜଣେ ଅନ୍ୟ ଜଣଙ୍କ ଗଳାରେ ମାଳା ପିନ୍ଧାଇ ଦେଲେ । ଖଡ୍‌ଗବର୍ମା ଓ ବସନ୍ତକୁମାରୀ ମଧ୍ୟ ସେହିପରି କଲେ । ହର୍ଷଧ୍ୱନିରେ ସେହି ସ୍ଥାନ ପ୍ରକମ୍ପିତ ହୋଇ ଉଠିଲା ।

ମଣିରଂଜିତ ପାଖରେ ଏବେଯାଏଁ ଗୋଲାମ ଭାବରେ ଯେଉଁ ରାକ୍ଷସ ଓ ଗନ୍ଧର୍ବମାନେ ଥିଲେ, ସେମାନେ ଜଣ ଜଣ କରି ଆଗକୁ ଆସି ଖଡ୍‌ଗବର୍ମା

ଓ ଜୀବଦତ୍ତଙ୍କ ପାଦ ସ୍ପର୍ଶ କଲେ ।

ଜୀବଦତ୍ତ ଅନୁମାନ କଲେ, ଯେ, ସେମାନେ କିଛି କହିବାକୁ ଚାହୁଁଛନ୍ତି । ତେଣୁ ସେ ସେମାନଙ୍କୁ ପ୍ରଶ୍ନ କଲେ, ''କ'ଣ କହିବାକୁ ଚାହଁ ? ନିର୍ଭୟ ହୋଇ ପ୍ରକାଶ କର ।''

ଗନ୍ଧର୍ବ ନେତା ପ୍ରଥମେ କହିଲେ, ''ମହାବୀର ! ମୁଁ ଗୋଲାମ ଯକ୍ଷ ମାନଙ୍କର ନେତା । ମୋର ନିବେଦନ ହେଉଛି ଯେ ପର୍ବତ ମଧ୍ୟରେ ଯେଉଁ ଅସୁମାରୀ ସୁନା, ହୀରା, ନୀଳା ରହିଛି, ତାହା ଆମ୍ଭମାନଙ୍କୁ ଉପହାର ସ୍ୱରୂପ ପ୍ରଦାନ କରାଯାଉ ।''

ଏହା ଶୁଣି ଜୀବଦତ୍ତ ଓ ଖଡ୍‌ଗବର୍ମା ପରସ୍ପରକୁ ଚାହିଁଲେ । ଖଡ୍‌ଗବର୍ମା ସ୍ମିତହସି କହିଲେ, ''ଗନ୍ଧର୍ବନେତା ଯାହା ଇଚ୍ଛା କରୁଛନ୍ତି, ରାକ୍ଷସ ନେତାମାନେ ଯଦି ତାହାହିଁ ଇଚ୍ଛା କରନ୍ତି, ତେବେ ତୁମ୍ଭମାନଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ହେବା ନିଶ୍ଚିତ ।''

ରାକ୍ଷସଙ୍କ ନେତା ତା'ଙ୍କ କଥାରେ ବାଧା ଦେଇ ବିନୟର ସହିତ କହିଲା, '' ପ୍ରଭୁ ! ବହୁଦିନରୁ ଆମେ ମଣିରଂଜିତର ଗୋଲାମ ଭାବେ ରହି ଆସିଛୁ । ସୁଖ, ଦୁଃଖରେ ଆମେ ପାଖେ ପାଖେ ରହି ଆସିଛୁ । କେବେହେଲେ ଆମେ ପରସ୍ପର ଝଗଡା କରିନାହୁଁ । କୌଣସି କଥାକୁ ନେଇ ଆମ ଭିତରେ ବିବାଦ ହୋଇନାହିଁ । ଆମ ମଧ୍ୟରେ ମୈତ୍ରୀର ଭାବନା ସବୁବେଳେ ଅତୁଟ ରହୁ । ମୁଁ ସୁନା କି ହୀରା, ନୀଳା ଚାହିଁ ନାହିଁ । ମୁଁ ଚାହୁଁଛି, ଆଜିଠାରୁ ଏହି ସମଗ୍ର ଯକ୍ଷ ପର୍ବତ ଆମର ଓ ଆମ ସନ୍ତାନମାନଙ୍କର ହୋଇ ରହୁ । ବାସ୍, ଏହାହିଁ ମୋର ଏକମାତ୍ର ଇଚ୍ଛା ।''

ତା'ର ଇଚ୍ଛା ଶୁଣି ଖଡ୍‌ଗବର୍ମା ଓ ଜୀବଦତ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେମାନେ ଯକ୍ଷ ରାଜାଙ୍କୁ କହିଲେ: ''ଖଡ୍‌ଗ ଓ ଜୀବଦତ୍ତ, ତୁମ୍ଭେମାନେ ଯେଉଁଠିକୁ ଯିବାକୁ ଚାହଁ, ଏହି ବିମାନରେ ବସି ଯାଇପାର । ଆଜିଠାରୁ ଏକମାସ ପର୍ଯ୍ୟନ୍ତ ତୁମେ ଏହାକୁ ବ୍ୟବହାର କରିପାର । ଏହାକୁ ନିଜର ମନେ କରିବ । ଏକମାସ ପରେ ତୁମେ ମୋତେ ଏହି ବିମାନ ଫେରାଇ ଦେବ । ତୁମ୍ଭମାନଙ୍କର କଲ୍ୟାଣ ହେଉ ।''

''ଆପଣ ନିକଟରେ ଆମେ କୃତଜ୍ଞ, ଯକ୍ଷରାଜା !'' ଏହା କହି ଚାରିଜଣ ଯକ୍ଷରାଜାଙ୍କୁ ପ୍ରଣାମ ଜଣାଇଲେ । ବିମାନ ବୀରପୁରର ଅଭିମୁଖେ ପବନ ବେଗରେ ଉଡିଗଲା ।

(ସମାପ୍ତ)



# ଆଦର-ସତ୍କାର

ଗୋଟିଏ ଗ୍ରାମରେ ପୁରୁଷୋତ୍ତମ ଶର୍ମା ନାମକ ଜଣେ ପଣ୍ଡିତ ରହୁଥିଲେ । ସମସ୍ତେ କହୁଥିଲେ ଯେ, ସେ ଜଣେ ଉଚ୍ଚକୋଟୀର ବିଦ୍ୱାନ ଓ ଶାସ୍ତ୍ରାଦିରେ ତା'ଙ୍କର ଗଭୀର ଅଧ୍ୟୟନ ରହିଛି । ଦୂର ଗ୍ରାମରେ ବାସ କରୁଥିବା ରଘୁପତି ଥରେ ତାଙ୍କୁ ସାକ୍ଷାତ କରିବାକୁ ଆସିଲେ । ସେ ମଧ୍ୟ ଜଣେ ପଣ୍ଡିତ ଅଟନ୍ତି ।

ମଧ୍ୟାହ୍ନ ଭୋଜନ ପରେ ଦୁହେଁ ଚଉତରା ଉପରେ ବସି ଶାସ୍ତ୍ର ସମ୍ବନ୍ଧୀୟ ଆଲୋଚନା କରୁଥିଲେ । ଏହି ସମୟରେ ଜଣେ କାଠୁରିଆ ସେହି ବାଟ ଦେଇ ଯାଉଥିଲା । ପୁରୁଷୋତ୍ତମ ଶର୍ମାଙ୍କୁ ଦେଖିବା କ୍ଷଣି ସେ ତା' ମଥାରୁ କାଠଭାର ତଳକୁ ଓହ୍ଲାଇଦେଲା ଓ ହାତ ଯୋଡି ବିନୟପୂର୍ବକ ନମସ୍କାର ଜଣାଇଲା ।

ପୁରୁଷୋତ୍ତମ ଶର୍ମା ମଧ୍ୟ ଦୁଇହାତ ଯୋଡି ତା'କୁ ପ୍ରତିନମସ୍କାର ଜଣାଇଲେ ଓ ପଚାରିଲେ, ''କିପରି ଅଛ ରତନ ? ଭଲ ଅଛ ତ ?''

ରଘୁପତି ଏହା ଦେଖି ଆଶ୍ଚର୍ଯ୍ୟ ହେଲେ ଓ ସେ ପୁରୁଷୋତ୍ତମ ଶର୍ମାଙ୍କୁ ପଚାରିଲେ, ''ଶର୍ମାଜୀ, ଆପଣ ଏ କ'ଣ କରୁଛନ୍ତି ? ସେଇ କାଠୁରିଆକୁ ଆପଣ ନମସ୍କାର କରୁଛନ୍ତି କାହିଁକି ?''

ତା'ଙ୍କ କଥାରେ ପୁରୁଷୋତ୍ତମ ହସି ଉଠି କହିଲେ,- ''ରତନ ଆଦର-ସତ୍କାରର ମହତ୍ତ୍ୱ ବୁଝି ପାରିବା ଭଳି ମଣିଷ । ଆମର ବୃତ୍ତି ଅଲଗା ହୋଇପାରେ, କିନ୍ତୁ ଆମେ ସମସ୍ତେ ମନୁଷ୍ୟ । ଆମର ଶାସ୍ତ୍ର, ପୁରାଣ ମଧ୍ୟ ଆମକୁ ଏହି ଶିକ୍ଷା ଦେଇଛି । ଯିଏ ଆମକୁ ସମ୍ମାନ ଦେଖାଇବ, ଆମେ ତା'କୁ ସମ୍ମାନ ଦେଖାଇବା ଉଚିତ । ତାହା ଫଳରେ ଆମର ଗୌରବ ଓ ମର୍ଯ୍ୟାଦା ବୃଦ୍ଧି ପାଇବ ।

-କିରଣ



ବେତାଳ
କଥା

# କଟୁ ଭାଷିଣୀ ଦାନବୀ

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମୃଦୁ ମୃଦୁ ବର୍ଷା । ବଣବୁଦା ଭିତରୁ ଭାସି ଆସୁଥାଏ ସାଇଁ ସାଇଁ ଶବ୍ଦ । ଶ୍ୱାନ, ଶ୍ୱାପଦଙ୍କ ରଡି ସାଙ୍ଗକୁ ଶୁଭୁଥାଏ ଅଶରୀରୀ ମାନଙ୍କର ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୋକରେ ଦିଶି ଯାଉଥାଏ ଭୟାନକ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେମାତ୍ର ବିଚଳିତ ନ ହୋଇ ସେହି ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟିଗଲେ ଏବଂ ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତାରି ଆଣିଲେ । ସେ



ତା'କୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବାମାତ୍ରେ ଶବସ୍ଥିତ ବେତାଳ କହି ଉଠିଲା, "ରାଜନ୍, ସମୟ ଅର୍ଦ୍ଧରାତ୍ର ! ଘୋର ଅନ୍ଧକାରରେ ମୁହଁକୁ ମୁହଁ ଦିଶୁନାହିଁ । ମୁଁ ବୁଝି ପାରୁନାହିଁ ଯେ, ତୁମେ କେଉଁ ଲକ୍ଷ୍ୟ ସାଧନ ପାଇଁ ଏ ସବୁ କରୁଛ ? ମୋତେ ତୁମର ଅଭିପ୍ରାୟ ବିଷୟରେ ଜାଣିବାକୁ ଦିଅ । ଏପରି ଅନେକ କ୍ଷେତ୍ରରେ ଘଟିଥାଏ ଯେ, କେତେକ ଲୋକ ନିଜର ଅଭିପ୍ରାୟ ପୂରଣ କରିବା ପାଇଁ ବହୁ କଷ୍ଟ ସ୍ୱୀକାର କରନ୍ତି । ମାତ୍ର ଶେଷବେଳକୁ ନିଜର ଅସଲ ଅଭିପ୍ରାୟକୁ ମଧ୍ୟ ଭୁଲି ଯାଆନ୍ତି । ଏହିପରି ଜଣେ ଯୁବତୀ ଅରୁଣାର କାହାଣୀ ମୋ ଠାରୁ ଶୁଣ । ସେ ଜଣେ ଋଷିଙ୍କ ଠାରୁ ବର ପ୍ରାପ୍ତ ହୋଇଥିଲା । କିନ୍ତୁ ସେ ସେହି ବରରୁ କିଛି ଲାଭ ପାଇ ପାରିଲା ନାହିଁ । ବିନା ବିଚାରରେ ଅନ୍ୟଙ୍କ ମଙ୍ଗଳ ପାଇଁ ସେ ତା'କୁ ପ୍ରୟୋଗ କଲା । ଏବେ ମୋ ଠା'ରୁ ସେହି କାହାଣୀ ମନଦେଇ ଶୁଣ । ପଥଶ୍ରମ ମଧ୍ୟ ଲାଘବ ହେବ । ଏପରି କହି ବେତାଳ ଗପିବାରେ ଲାଗିଲା ।

ସେବତୀ ଗୋଟିଏ ବଦ୍‌ରାଗୀ, ଗପୁଡି ଓ କଳହପ୍ରିୟ ମହିଳା । କାହାରିକୁ ଗାଳିମନ୍ଦ କରିବାର ସୁଯୋଗ ମିଳିଲେ, ସେ ଛାଡେ ନାହିଁ । ତା'ର ସ୍ୱାମୀ ସୁକାନ୍ତ ଜଣେ ଭଦ୍ରଲୋକ ଓ ସେ ଯାହା ଗାଳି ଦିଏ, ସେ ତା'କୁ ଧୈର୍ଯ୍ୟର ସହିତ ସହିଯାନ୍ତି । ସେମାନଙ୍କର ଗୋଟିଏ ପୁତ୍ର ସୁରେଶ । ବଡହୋଇ ସେ ତା' ବାପାଙ୍କ ପରି ଖୁବ୍ ଶାନ୍ତ, ସ୍ଥିର ହେଲା । ତା'ର ମା'କୁ ଛାଡିଦେଲେ, ପୃଥିବୀର ଆଉ କାହାକୁ ସେ ଏତେ ଡରେ ନାହିଁ ।

ଦିନେ ସୁରେଶ ତା'ର ମା'ଙ୍କ ପାଇଁ ଗୋଟିଏ ରେଶମୀ ଶାଢ଼ୀ କିଣିବା ପାଇଁ ଗଙ୍ଗପୁର ବାହାରିଲା । ରେଶମୀ ଶାଢ଼ୀ ପାଇଁ ଏହି ଗ୍ରାମ ଖୁବ୍ ପ୍ରସିଦ୍ଧ । ବହୁ ଦୂର ସ୍ଥାନରୁ ଲୋକମାନେ ଏଠାକୁ ଶାଢ଼ୀ କିଣିବାକୁ ଆସନ୍ତି । ଏହି ଗ୍ରାମରୁ ଗୋଟିଏ ଶାଢ଼ୀ କିଣିବା ପାଇଁ ଗଙ୍ଗା ବହୁତ ଦିନରୁ ଆଶା କରିଥିଲା । ସେ ସୁରେଶକୁ ଶାଢ଼ୀର ପ୍ରକୃତ ରଙ୍ଗ ଓ ଶୈଳୀ ଭଲଭାବେ ବୁଝାଇ ଶାଢ଼ୀ କିଣିବାକୁ ପଠାଇଲା । ଶାଢ଼ୀ ମା'ର ମନ ମୁତାବକ ହେବା ଦରକାର । ନଚେତ୍ ପରିସ୍ଥିତିର ଗମ୍ଭୀରତା ସୁରେଶ ବୁଝି ପାରୁଥିଲା ।

ସୁରେଶ ଅନେକ ବୁଣାକାରଙ୍କ ପାଖକୁ ଗଲା । କିନ୍ତୁ କେଉଁଠାରେ ମା'ଙ୍କର ପସନ୍ଦ ମୁତାବକ ଶାଢ଼ୀ ମିଳିଲା ନାହିଁ । ଶାଢ଼ୀ ନ ନେଇ ଘରକୁ ଗଲେ ଅବସ୍ଥା ଅସମ୍ଭାଳ ହେବ । ପସନ୍ଦ ନ ହେଲେ ଆହୁରି ଖରାପ । ମା'ଙ୍କର ଗାଳିମନ୍ଦ କଥା ମନେ ପଡିଯିବା ପରେ ସେ ମ୍ରିୟମାଣ ହୋଇ ପଡିଲା । କ'ଣ କରିବ କିଛି ଭାବି ନ ପାରି ଗୋଟିଏ ଗଛମୂଳେ ହତାଶ ହୋଇ ବସି ପଡିଲା ।

ଗଛଟି ଗୋଟିଏ ନଦୀ କୂଳରେ ଥିଲା । କିଛି ସମୟ ପରେ କେତୋଟି ଝିଅ ନିତିଦିନିଆ ଅଭ୍ୟାସ ଅନୁସାରେ ଜଳପାତ୍ର ଧରି ନଦୀରେ ସ୍ନାନ କରିବାକୁ ଆସିଲେ । ସେମାନଙ୍କ ମଧ୍ୟରେ ଜଣେ, ଅରୁଣା । ସେ ସୁରେଶକୁ ଗଛମୂଳେ ବସି ଥିବାର ଦେଖି କଠୋର କଣ୍ଠରେ କହିଲା: ''ହେଃ ! ଏଠାରେ କାହିଁକି ବସିଛ ? ଏହା ବାଳିକାମାନଙ୍କର ସ୍ନାନ ପାଇଁ ଉଦ୍ଦିଷ୍ଟ, ଏହା ଜାଣ ନି କି ?''



ସୁରେଶ ତା'ର କଣ୍ଠସ୍ୱର ଶୁଣି ଆହୁରି ଦବିଗଲା ଓ ତା'ର ଦୁର୍ଦ୍ଦଶାର କାରଣ ବୁଝାଇଲା । ତା' କଥା ଶୁଣି ଅରୁଣା ଉଚ୍ଚସ୍ୱରରେ ହସି ଉଠିଲା ଓ କହିଲା, ''ତୁମ ମା' କେଉଁ ପ୍ରକାରର ସ୍ତ୍ରୀଲୋକ ? ସେ ନିଜେ ନିଜ ପାଇଁ ଶାଢ଼ୀ କିଣିବାକୁ ଆସି ପାରିଥା'ନ୍ତେ କିମ୍ବା ଜଣେ ସ୍ତ୍ରୀଲୋକଙ୍କୁ ପଠାଇଥାନ୍ତେ । ଦେଖ, ସେ ତୁମପରି ଜଣେ ସରଳ, ଭଦ୍ର ଯୁବକଙ୍କୁ ପଠାଇଛନ୍ତି । କିଛି ବ୍ୟସ୍ତ ହେବାର ନାହିଁ, ମୁଁ ତୁମକୁ ସାହାଯ୍ୟ କରିବି । ତୁମେ ଗ୍ରାମ ଭିତରକୁ ଯାଇ ଶିବରାଜଙ୍କ ଗୃହ କେଉଁଠାରେ ପଚାର । ସେଠାରେ ମୋତେ ଅପେକ୍ଷା କର । ମୁଁ ତୁମ ମା'ଙ୍କ ମନ ପସନ୍ଦର ଶାଢ଼ୀ କିଣାଇ ଦେବି । ତା'ପରେ ଦେଖିବ, ତୁମ ମା' ତୁମକୁ କେତେ ପ୍ରଶଂସା କରିବେ ।''

ସୁରେଶ ନୀରବରେ ସେଠାରୁ ଚାଲିଯାଇ ଶିବରାଜଙ୍କ ଘର ପାଖରେ ଅପେକ୍ଷା କଲା । କିଛି ସମୟ ପରେ ଅରୁଣା ସେଠାରେ ପହଞ୍ଚିଲା । ସେ ତା'କୁ ସେବତୀର ଚେହେରା ସମ୍ପର୍କରେ ପଚାରିଲା । ତା'ପରେ ସେ ଗୋଟିଏ ଶସ୍ତା ଶାଢ଼ୀ ଟାଣି ଆଣି ତା' ହାତକୁ ବଢ଼ାଇ ଦେଲା ।

''ଘରକୁ ଯାଅ ଓ ଏଇଟିକୁ ତୁମ ମା'ଙ୍କୁ ଦେଇ କହିବ, ବୁଣାକାର କହୁଥିଲା ଯେ ରାଣୀ ପାଞ୍ଚବର୍ଷ ତଳେ ଠିକ୍ ଏହିପରି ଗୋଟିଏ ଶାଢ଼ୀ ବରାଦ ଦେଇ ବୁଣାଇ ଥିଲେ । ତା'ଙ୍କୁ ଏ'କଥା ମଧ୍ୟ କହିବ, ଯେ ବୁଣାକର କହୁଥିଲା, ବଡ ଆଶ୍ଚର୍ଯ୍ୟର କଥା ! ଦୁଇ ଜଣ ମହିଳାଙ୍କର ସମାନ ରଚି ହେଲା କିପରି ? ତୁମ ମା' ବହୁତ ଖୁସି ହୋଇଯିବେ, କାରଣ ତା'ଙ୍କୁ ଜଣେ ରାଣୀଙ୍କ ସହିତ ତୁଳନା କରାଗଲା । କିଛି ବ୍ୟସ୍ତ ହୁଅ ନାହିଁ । ତୁମ ମା' ଏହି ଶାଢ଼ୀକୁ ନିଶ୍ଚୟ ପସନ୍ଦ କରିବେ ।

ସୁରେଶ ଗ୍ରାମକୁ ଫେରି ଆସିଲା ଓ ଅରୁଣା'ର କଥାକୁ ମା'ଙ୍କ ଆଗରେ ବାରମ୍ବାର ଦୋହରାଇଲା । ସେବତୀକୁ କଥା ଖୁବ୍ ଭଲ ଲାଗିଲା ଓ ସେ ସୁରେଶର ପସନ୍ଦର ଶାଢ଼ୀକୁ ତାରିଫ୍ କଲା ।

ତା'ପରଦିନ ସୁରେଶ ପୁଣିଥରେ ଗଙ୍ଗାପୁର ଗଲା ଓ ଅରୁଣାକୁ ଅପେକ୍ଷା କଲା । ଅରୁଣା ସୁରେଶକୁ ଦେଖିବା ମାତ୍ରେ ତା' ନିକଟକୁ ଧାଇଁ ଆସିଲା ଓ ତା'କୁ ପଚାରିଲା, ''ତୁମ ମା' ଶାଢ଼ୀ ମନକୁ ଆଣିଲେ ତ ? ସେ କ'ଣ ତୁମକୁ ଗାଳି



ଦେଲେ ?''

''ନା', ଶାଢ଼ୀ ମା'ଙ୍କର ଖୁବ୍ ପସନ୍ଦ ହେଲା । ମୁଁ ଏଠାକୁ ତୁମ ସହିତ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ କଥା ହେବାକୁ ଆସିଛି । ମୁଁ ତୁମକୁ ବିବାହ କରିବାକୁ ଚାହେଁ''- ସୁରେଶ ସଲ୍ଲଜ ଭାବେ କହିଲା ।

''ମୋତେ କାହିଁକି ଏ'କଥା କହୁଛ ? ତୁମ ବାପା, ମା'ଙ୍କୁ କହିବ ସେ ମୋ ବାପା ମା'ଙ୍କ ସହିତ କଥା ହେବେ ।'' ଅରୁଣା ଉତ୍ତର ଦେଲା ।

''ସେ ସବୁ ହେବ । କିନ୍ତୁ ତା' ପୂର୍ବରୁ ମୁଁ ତୁମର ମନୋଭାବ ଜାଣିବାକୁ ଚାହେଁ । ସେଥିପାଇଁ ମୁଁ ତୁମକୁ ଦେଖା କରିବାକୁ ଆସିଛି ।''

ଅରୁଣା କିଛି ସମୟ ପାଇଁ ଭାବିଲା ଓ ତା'ପରେ ଉତ୍ତର ଦେଲା, ''ତୁମେ ଖୁବ୍ ସରଳ, ଶାନ୍ତ ଓ ଭଦ୍ର । ତେଣୁ ମୋତେ ଭଲ ଲାଗିଲ ଓ ତୁମକୁ ସାହାଯ୍ୟ କରିବା ପାଇଁ ମୁଁ ଶାଢ଼ୀ ବାଛିଦେଲି ।''

ତା'ପରେ ସୁରେଶ ତା'କୁ ତା'ର ମା'ଙ୍କ ବିଷୟରେ ସବୁ କଥା କହିଲା ଓ ପଚାରିଲା, ''ତୁମର ବୁଦ୍ଧିମତ୍ତା ଓ ଚତୁରତା ବଳରେ ମା'ଙ୍କର ସ୍ୱଭାବକୁ ବଦଳାଇ ପାରିବ କି ?''

ଅରୁଣା ନିଷ୍ପତ୍ତି ନେବାରେ ଆଦୌ କାଳ ବିଳମ୍ବ କଲା ନାହିଁ । ତା'ର ଋଷିବର ପ୍ରାଣାନନ୍ଦ'ଙ୍କର କଥା ମନେ ପଡିଗଲା । ଦେଶ ଭ୍ରମଣ କରୁଥିବା ସମୟରେ ସେ ଗଙ୍ଗାପୁର ଆସିଥିଲେ । ନଦୀ କୂଳରେ ତାଙ୍କ ପାଦ ଖସିଗଲା ଓ ଗୋଡରେ ଆଘାତ ଲାଗିଲା । ସେ ଉଠି ଠିଆ ହୋଇ ପାରିଲେ ନାହିଁ । ସ୍ନାନ କରିବାକୁ ଆସିଥିବା ଗ୍ରାମର ଝିଅମାନେ ଖୁବ୍ ଜୋର୍‌ରେ ହସି ଉଠିଲେ । ମାତ୍ର ଅରୁଣା ସେମାନଙ୍କୁ ବାରଣ କଲା ଓ ଋଷିଙ୍କୁ ଉଠାଇ ଚାଲିବାରେ ସାହାଯ୍ୟ କଲା । ତା'ର ସାହାଯ୍ୟ ପାଇ ଋଷି ଖୁବ୍ ଖୁସି ହୋଇଗଲେ ଓ କହିଲେ: ମୁଁ ତୁମର ସେବାରେ ପ୍ରସନ୍ନ ହୋଇଛି । ତୁମେ ଗୋଟିଏ ବର ମାଗିପାର ।''

ଅରୁଣା ସେତେବେଳେ କ'ଣ ମାଗିବ ଠିକ୍ କରିପାରିଲା ନାହିଁ । ଚିନ୍ତା କରିବା ପାଇଁ ତା'କୁ କିଛି ସମୟ ଦେବାକୁ ସେ ଅନୁରୋଧ କଲା । ଋଷିବର କହିଲେ, ''ଯେତେବେଳେ ତୁମେ ମାଗିବାକୁ ଚାହଁ, ସେତେବେଳେ ଚକ୍ଷୁ ବନ୍ଦ କରି ମୋର'ର ନାମ ତିନି ଥର ଉଚ୍ଚାରଣ କରିବ । ମୁଁ ତୁମ ସମ୍ମୁଖରେ ପ୍ରକଟିତ ହେବି ଓ ବର ପ୍ରଦାନ କରିବି ।'' ତା'ପରେ ସେ ସେହି ସ୍ଥାନ ପରିତ୍ୟାଗ କଲେ ।

ଅରୁଣା ଏହି ଘଟଣା ସୁରେଶ ଆଗରେ ବର୍ଣ୍ଣନା କରି କହିଲା: ''ମୁଁ ଭାବୁଛି, ଜଣେ ସାଧାରଣ ଲୋକ ତୁମ ମା'ଙ୍କର ସ୍ୱଭାବରେ ପରିବର୍ତ୍ତନ ଆଣି ପାରିବ ନାହିଁ । ଆମକୁ ସ୍ୱାମୀ ପ୍ରାଣାନନ୍ଦଙ୍କର ସାହାଯ୍ୟ ନେବାକୁ ପଡିବ ।'' ଏପରି କହି ସେ

ଚକ୍ଷୁ ମୁଦ୍ରିତ କରି ତା'ଙ୍କର ନାମ ତିନିଥର ଉଚ୍ଚାରଣ କଲେ ।

ଋଷିବର ପ୍ରକଟିତ ହେଲେ । ସେ ଅରୁଣାଠାରୁ ସମସ୍ତ କଥା ଶୁଣିବା ପରେ, ସୁରେଶକୁ କହିଲେ, ''ଆସ ପୁତ୍ର ! ତୁମ ମା'ଙ୍କୁ ସାକ୍ଷାତ କରିବାକୁ ଯିବା ।''

ସେମାନେ ଗ୍ରାମରେ ପହଞ୍ଚିଲେ । ଋଷିବର ତା'ଙ୍କ ଘର ଭିତରକୁ ପ୍ରବେଶ କଲେ । ସେବତୀ ଗୋଟିଏ ଖଟ ଉପରେ ଗଡୁଥିଲା । ''ମା', ମୋତେ କିଛି ଭିକ୍ଷା ମିଳିବ କି ?''- ଋଷି କହିଲେ ।

ସେବତୀ ଚମକି ପଡି ଉଠି ବସିଲା ଓ କଠୋର କଣ୍ଠରେ ଚିତ୍କାର ଆରମ୍ଭ କଲା, ଏପରି କେହି ଭିକ୍ଷା ମାଗେ ?'' ତା'ପରେ ତା'ର ଆରମ୍ଭ ହୋଇଗଲା ଅଜସ୍ର ଗାଳି ବର୍ଷଣ ।

ଋଷିବର କହିଲେ, ''ମା, ଦୟାକରି ଭିକ୍ଷା ଦେବାକୁ ଚାହୁଁଥିଲେ ଦିଅ, ନଚେତ୍ ବିଦା କରିଦିଅ ।''

''ମୁଁ ମୋ ପିଲାଦିନରୁ ଏପରି ଭାଷା କହି ଆସୁଛି । ମୁଁ ଏପରି ଭାଷା କହି ବାପା, ମା, ସମ୍ପର୍କୀୟ ଏପରି ସ୍ୱାମୀ ଓ ପୁତ୍ରକୁ ମଧ ଅପମାନିତ କରେ । ଏଥିନେଇ ମୋର କିଛି ଅସୁବିଧା ହୋଇନି କି ହେବନାହିଁ ।''

''ଯଦି ମୁଁ ତୁମ ନିକଟରେ କିଛି ଦୋଷ କରିଥାଏ, ତେବେ ତୁମ ଗାଳି ମୋ ପ୍ରତି ପ୍ରଯୁଜ୍ୟ ହେବ । କିନ୍ତୁ ଯଦି ତୁମେ ବିନା ଦୋଷରେ ମୋତେ ଗାଳି ଦେଉଥାଅ, ତେବେ ଏହି ସବୁ ଗାଳି ତୁମ ପାଖକୁ ଫେରିଯିବ ଓ ତୁମ ପ୍ରତି ଏକ ଅଭିଶାପ ହେବ । ଯଦି ତୁମେ କାହାକୁ କୌଣସି କାରଣ ବିନା ଗାଳି କରିବ, ତେବେ ତାହା ଗୋଟିଏ ରାକ୍ଷସୀର ରୂପ ଧାରଣ କରି ତୁମ ସମ୍ମୁଖରେ ଉଭା ହେବ !''- ମହର୍ଷି ପ୍ରାଣାନନ୍ଦ କହିଲେ ।



ହଠାତ୍ ଗୋଟିଏ ଭୟଙ୍କର ଆକୃତିର ଦାନବୀ ସେବତୀ ସମ୍ମୁଖରେ ଠିଆ ହୋଇଗଲା । ସେ ତା'କୁ କହିଲା, ''ସେବତୀ ! ମୁଁ ହେଉଛି କଟୁଭାଷିଣୀ ଦାନବୀ । ଦୁଇ ଚାରି ବର୍ଷ ଭିତରେ ମୁଁ ତୋତେ ନିଃଶେଷ କରି ଦେଇଥାଆନ୍ତି । ମାତ୍ର ଏବେ ଋଷିଙ୍କର ଅଭିଶାପ ମୋତେ ସମ୍ମୁଖକୁ ଆସିବାକୁ ବାଧ କଲା । ଯଦି ତୁ କାହାକୁ ନଷ୍ଟ କରିବାକୁ ଚାହୁଁଛୁ, ଶୀଘ୍ର ପ୍ରକାଶ କର । ନଚେତ୍ ମୁଁ ତତେ ଧ୍ୱଂସ କରିଦେବି !''

ସେବତୀ ଭୟରେ ଥରିବାକୁ ଲାଗିଲା । ଋଷିଙ୍କ ପାଦତଳେ ପଡି କ୍ଷମା ଭିକ୍ଷା କରିବା ବ୍ୟତୀତ ତା'ର ଅନ୍ୟ ଉପାୟ ନ ଥିଲା । ସେ ତା'ଙ୍କ ପାଦତଳେ ପଡି କହିଲା: ''ହେ ମାହାତ୍ମା ! ମୋତେ କ୍ଷମା କର ! ମୁଁ ବିରାଟ ଭୁଲ୍ କରିଛି ।''

ଋଷିବର କହିଲେ, ''ଏହି ଦାନବୀ ତୁମର ନିକଟରେ ଲୋକମାନଙ୍କର ଭୟଙ୍କର କ୍ଷତି କରିବାକୁ

ଚାହେଁ । ତୁମ ଘରର ଅଗଣାରେ ଥିବା ଆମ୍ବଗଛ ତୁମର ଅତି ପ୍ରିୟ । ଦାନବୀକୁ କୁହ, ସେ ତା'କୁ ଧ୍ୱଂସ କରିଦେଉ ଓ ତୁମକୁ ଛାଡିଦେଉ ।''

ସେବତୀ ସେପରି କଲା ଓ ଦାନବୀ ତତ୍‌କ୍ଷଣାତ୍ ସେଠାରୁ ଅପସରି ଗଲା ।

ଋଷିବର ତା'କୁ କୋମଳ ଭାବେ ବୁଝାଇଲେ, ''ସେବତୀ, ଏବେଠାରୁ ତୁମେ କାହାକୁ ବିନା କାରଣରେ ଗାଳିମନ୍ଦ କରିବ ନାହିଁ । ଯେତେବେଳେ ତୁମେ ସେପରି କରିବ, ସେହି ଦାନବୀ ତୁମ ସମ୍ମୁଖକୁ ଆସିବ ଓ ତୁମର କ୍ଷତି ଘଟାଇବ । ଯଦି ତୁମର ସ୍ୱଭାବ ଓ ଆଚରଣ ବଦଳିଯାଏ, ତେବେ ଆଉ ଥରେ ଦାନବୀ ଆସିବାର ପ୍ରଶ୍ନ ଉଠୁନାହିଁ । ଗଙ୍ଗାପୁର ଗ୍ରାମରେ ଅରୁଣା ନାମ୍ନୀ ଏକ ବାଳିକା ଅଛି । ସେ ଖୁବ୍ ବୁଦ୍ଧିମତୀ । ତା'କୁ ବୋହୂ କରି ଘରକୁ ଆଣ । ସେ ତୁମର ଉପଯୁକ୍ତ ଯତ୍ନ ନେବ । କଟୁଭାଷିଣୀ ଦାନବୀର ଶକ୍ତି କ୍ଷୀଣ ହୋଇଯିବ ଓ ଧୀରେ ଧୀରେ ସେ ଅଦୃଶ୍ୟ ହୋଇଯିବ । ତେବେ ତୁମର ସୁଖ ସନ୍ତୋଷର ଚାବିକାଠି ତୁମ ହାତରେ ।''

କିଛିଦିନ ମଧ୍ୟରେ ଅରୁଣା ଓ ସୁରେଶର ବିବାହ ଅନୁଷ୍ଠିତ ହେଲା । ବେତାଳ କାହାଣୀଟି କହି ସାରିବା ପରେ ପ୍ରଶ୍ନ କଲା, ''ହେ ରାଜନ୍ ! ମନେ ହେଉଛି ଅରୁଣା, ଋଷି ପ୍ରାଣାନନ୍ଦଙ୍କ ଠାରୁ ପାଇଥିବା ବରର ସଦୁପଯୋଗ କରିପାରିଲା ନାହିଁ । ସେଇ ବର ଦ୍ୱାରା ସେ କୌଣସି ସମ୍ଭ୍ରାନ୍ତ ଘରର କୁଳବଧୂ ହୋଇ ପାରିଥାଆନ୍ତା ଓ ସୁଖ, ସୌଭାଗ୍ୟରେ ଜୀବନ ବିତାଇଥା'ନ୍ତା । କିନ୍ତୁ ସେ ତା'ର ବର ନିଜ ପାଇଁ କିମ୍ବା ନିଜ ପରିବାରର କାହା ପାଇଁ ପ୍ରୟୋଗ କଲା ନାହିଁ । ମୋର ମନେ ହେଉଛି, ଅରୁଣା ଆଦୌ ବୁଦ୍ଧିମତୀ ନୁହେଁ । ତୁମର ମତ କ'ଣ ? ମୋ ପ୍ରଶ୍ନର ଉତ୍ତର ଜାଣି ମଧ୍ୟ ନୀରବ ରହିଲେ ତୁମର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।

ରାଜା ବିକ୍ରମ ଉତ୍ତର ଦେଲେ, ''ପ୍ରତ୍ୟେକ ପିତାମାତା ଚାହାନ୍ତି ଯେ, ତା'ଙ୍କର କନ୍ୟା ସୁଖମୟ ବୈବାହିକ ଜୀବନ ବିତାଉ । ତେଣୁ ମୁଁ ଅନୁଭବ କରୁଛି ଅରୁଣା ତା'ର ପିତାମାତାଙ୍କ ଆନନ୍ଦ ପାଇଁ ନିଜର ବର ପ୍ରୟୋଗ କରିଛି । ସାଧାରଣତଃ ପୁରୁଷ ମାନେ କ୍ଷଣକୋପୀ । ମାତ୍ର ସୁରେଶର ସ୍ୱଭାବ ଏହାର ବିପରୀତ । ଯେ କୌଣସି କନ୍ୟା ତା'ପରି ଜଣେ ପୁରୁଷକୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିବ । ଅରୁଣା ତା'ର ବର ପ୍ରଭାବରେ ନିଜର ଶାଶୁଙ୍କୁ ଆରୋଗ୍ୟ କଲା । ଏହା ତା'ର ପରିବାରରେ ସୁଖ ଶାନ୍ତି ଆଣିଦେବ । ତେଣୁ ବାସ୍ତବରେ, ଅରୁଣା ଖୁବ୍ ବୁଦ୍ଧିମତୀ ।''

ରାଜାଙ୍କ ମୌନ ଭଙ୍ଗ ହେବାମାତ୍ରେ ବେତାଳ ଶବ ସହିତ ରାଜାଙ୍କ କାନ୍ଧରୁ ଅନ୍ତର୍ହିତ ହୋଇ ବୃକ୍ଷରେ ଝୁଲିପଡିଲା ।



# ଭାରତ ଆବିଷ୍କାର

## ପ୍ରଶ୍ନୋତ୍ତରୀ

କେତେକ ସ୍ଥାନର ବିଶେଷତ୍ୱ ରହିଛି, ଯାହା ସେହି ସ୍ଥାନକୁ ଲୋକପ୍ରିୟ କିମ୍ବା ପ୍ରସିଦ୍ଧ କରିଛି । ନିମ୍ନରେ ପ୍ରଦତ୍ତ ହୋଇଥିବା କେତୋଟି ସ୍ଥାନକୁ, ସେମାନଙ୍କର ବିଶେଷତ୍ୱ ଅଥବା ବ୍ୟକ୍ତି ବିଶେଷଙ୍କୁ ନେଇ ପ୍ରସିଦ୍ଧ ହୋଇଥିବା ସୂଚନାକୁ ଚିହ୍ନିବାକୁ ଚେଷ୍ଟା କର ।

୧. ଜାପାନ "ଉଦୟ ସୂର୍ଯ୍ୟର ଦେଶ" ଭାବେ ଜଣା ଅଛି । ଭାରତର କେଉଁ ଭାଗରେ ପ୍ରଥମେ ସୂର୍ଯ୍ୟ କିରଣ ପଡେ ?

୨. କେଉଁ ପ୍ରଦେଶରେ ଆଦିବାସୀ ଜନସଂଖ୍ୟାର ହାରାହାରି ସର୍ବାଧିକ ଲୋକ ବାସ କରନ୍ତି ?

୩. ଗୋଟିଏ ପ୍ରଦେଶର ଏକ ନିଜସ୍ୱ ଶୈଳୀର ନୃତ୍ୟ ରହିଛି । ବିଶ୍ୱ କବି ରବୀନ୍ଦ୍ରାନାଥ ଠାକୁର ଏହାକୁ ବାହ୍ୟ ଜଗତରେ ପରିଚିତ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ତାହା କେଉଁ ପ୍ରଦେଶ ?

୪. ଗୋଟିଏ ପ୍ରଦେଶରେ ସର୍ବାଧିକ ବୌଦ୍ଧ ବିହାର ରହିଛି, ଓ ତା'ହାର ନାମକରଣ ମଧ୍ୟ ସେହି ଅନୁସାରେ ହୋଇଛି । ଏହା କେଉଁ ପ୍ରଦେଶ ?

୫. ବ୍ରିଟିଶ ମାନେ ଦିଲ୍ଲୀରେ ଶାସନ କରୁଥିବା ବେଳେ, ସେମାନଙ୍କର ଗ୍ରୀଷ୍ମକାଳୀନ ରାଜଧାନୀ ଅନ୍ୟତ୍ର ଥିଲା । ତାହା କେଉଁ ପ୍ରଦେଶର କେଉଁ ସହର ?

୬. କେଉଁ ପ୍ରଦେଶ ହେଉଛି ପୃଥିବୀର ସର୍ବପ୍ରଥମ ଗଣତାନ୍ତ୍ରିକ ଉପାୟରେ ନିର୍ବାଚିତ ସାମ୍ୟବାଦୀ ସରକାର ?

୭. ଗୋଟିଏ ଆଦର୍ଶ ନଗରୀର ନକ୍ସା ପ୍ରସ୍ତୁତ କରିଥିଲେ ଫରାସୀ ସ୍ଥପତି ଲେ କୋର୍ବୁଜର । ଏହା ଦୁଇଟି ପ୍ରଦେଶର ରାଜଧାନୀ ଅଟେ । ତାହା କେଉଁ ସହର ଓ କେଉଁ ଦୁଇଟି ପ୍ରଦେଶର ରାଜଧାନୀ ?

୮. କୁମ୍ଭ ମେଳା ଚାରିଗୋଟି ଭିନ୍ନ ଭିନ୍ନ ସ୍ଥାନରେ ଅନୁଷ୍ଠିତ ହୁଏ । ସେଥିମଧ୍ୟରୁ ଦୁଇଟି ସ୍ଥାନ ଗୋଟିଏ ପ୍ରଦେଶରେ ଅବସ୍ଥିତ । କେଉଁ ପ୍ରଦେଶ ?

(ଉତ୍ତର ପରବର୍ତ୍ତୀ ସଂଖ୍ୟାରେ)

### ଜାନୁୟାରୀ ମାସର ପ୍ରକାଶିତ ପ୍ରଶ୍ନର ଉତ୍ତର

୧. ନେତାଜୀ ସୁବାସ ଚନ୍ଦ୍ର ବୋଷ୍

୨. ମଗନଲାଲ ଗାନ୍ଧୀ 'ସଦାଗ୍ରହ' ବା ଉତ୍ତମ କାମ ପାଇଁ ଆଗ୍ରହ ଶବ୍ଦଟି ମନୋନୀତ କରିଥିଲେ । ଗାନ୍ଧିଜୀ ଏହାକୁ 'ସତ୍ୟାଗ୍ରହ' ଭାବେ ଗ୍ରହଣ କଲେ ।

୩. ୧୯୧୬ ମସିହାରେ କଂଗ୍ରେସ୍‌ର ଲକ୍ଷ୍ନୌ ଅଧିବେଶନରେ ।

୪. ଲାଲା ଲଜପତ୍ ରାୟ, ବାଳ ଗଙ୍ଗାଧର ତିଳକ, ବିପିନ ଚନ୍ଦ୍ର ପାଲ ।

୫. ୧୯୦୫

୬. ୧୮୫୭

୭. ଡିସେମ୍ବର ୩୧, ୧୯୨୯ରେ କଂଗ୍ରେସ୍‌ର ଲାହୋର ଅଧିବେଶନରେ ।

୮. ୧୯୨୮ରେ, ସାର୍ ଜନ୍ ସାଇମନ୍‌ଙ୍କ ଅଧ୍ୟକ୍ଷତାରେ ଭାରତର ନେତାମାନଙ୍କ ସହିତ ପ୍ରଶାସନିକ ସଂସ୍କାର ସମ୍ପର୍କରେ ଆଲୋଚନା କରିବା ପାଇଁ ।

୯. ଅଗଷ୍ଟ ୨୪-୧୯୪୬

୧୦. ବାଳ ଗଙ୍ଗାଧର ତିଳକ

## ନାଗାଲାଣ୍ଡର ଲୋକ କଥା

ନାଗାଲାଣ୍ଡ, ଆମ ଦେଶର ଉତ୍ତର-ପୂର୍ବ କୋଣରେ ଥିବା ଏକ ପ୍ରାଣୋଚ୍ଛଳ ପାର୍ବତ୍ୟ ରାଜ୍ୟ । ଏହାର ଉତ୍ତର ସୀମାନ୍ତରେ ଅରୁଣାଚଳ ପ୍ରଦେଶ ଓ ଆସାମ, ଦକ୍ଷିଣରେ ମଣିପୁର, ପଶ୍ଚିମରେ ଆସାମ ଓ ପୂର୍ବରେ ମିଆଁମାର (ବର୍ମା) ରହିଛି ।

ଏହି ପ୍ରଦେଶର ଆୟତନ ୧୬,୫୮୮,୬୩୬ । ସମୁଦ୍ର ପତ୍ତନର ପ୍ରାୟ୧୪୯୦ ମିଟର ଉଚ୍ଚତାରେ ଏହାର ଅବସ୍ଥିତି ।

ନାଗାଲାଣ୍ଡ ଡିସେମ୍ବର ୧, ୧୯୬୩ରେ ଭାରତର ୧୬ତମ ପ୍ରଦେଶ ଭାବେ ଘୋଷିତ ହେଲା ଓ ଏହାର ରାଜଧାନୀର ନାମ କୋହିମା, ଏଠାରେ ମୁଖ୍ୟତଃ ଇଂରାଜୀ, ହିନ୍ଦୀ ଓ ନାଗାମିଜ୍ ଭାଷାର ପ୍ରଚଳନ ରହିଛି ।

ସାରାମତୀ, ନାଗା ପାର୍ବତ୍ୟ ଅଞ୍ଚଳର ଉଚ୍ଚତମ ଶୃଙ୍ଗ, ଯାହାର ଉଚ୍ଚତା ସମୁଦ୍ର ପତ୍ତନ ଠାରୁ ୩୮୭୭ ମିଟର । କୋହିମା ଏକ ଗିରି ନିବାସ, ଯାହା ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ଖୁବ୍ ପ୍ରସିଦ୍ଧ ।

ଡିମାପୁର, ସମୁଦ୍ର ପତ୍ତନଠାରୁ ୧୯୫ ମିଟର ଉଚ୍ଚତାରେ ଅବସ୍ଥିତ ଓ ଏହା ପ୍ରଦେଶର ପ୍ରବେଶଦ୍ୱାର ଅଟେ ।

# କୋହିଟୋକୁ ଶାନ୍ତି ମିଳିଲା

ନାଗାଲାଣ୍ଡର ଏକ ଛୋଟିଆ ଗାଁ ଜୁନ୍‌ହେବୋଟୋରେ କୋହିଟୋର ଘର । ଚଉଦ ବର୍ଷର ବାଳକ କୋହିଟୋ ପିତୃମାତୃହୀନ । ଗ୍ରାମବାସୀମାନେ ନିଜ ନିଜର କାମଧନ୍ଦାକୁ ନେଇ ବ୍ୟସ୍ତ ରହୁଥିଲେ । ''ସମସ୍ତେ କାର୍ଯ୍ୟବ୍ୟସ୍ତ, ଆଉ ମୁଁ ସବୁବେଳେ ବେକାର ! ମୁଁ କିଛି ଭଲ କାମ କରିପାରିବି ନାହିଁ ?'' ସେ ହାତ ମୁଠା ମୁଠା କରି ଚିନ୍ତା କଲା, ''ମୁଁ ନିଶ୍ଚୟ ଏପରି କିଛି କରିବି,



ଯାହା ଫଳରେ ମୋତେ ସମସ୍ତେ ସମ୍ମାନ କରିବେ ।''

ଏତିକି ବେଳେ ତା' ପାଖକୁ ଗୀତର ଲହରୀ ଭାସି ଆସିଲା । କିଛି ଦୂରରେ ଥିବା ଏକ ରାସ୍ତା ଦେଇ ଗ୍ରାମର ବାଳିକା ମାନେ ଯାଉଛନ୍ତି । ସେମାନେ ତା'ଙ୍କର *ଖାଙ୍କ*ରେ ମାଠିଆ ରଖିଛନ୍ତି, କେତେ ମାଇଲ୍ ଦୂରରେ ଥିବା ପାହାଡର ଗଡାଣିଆ ଅଞ୍ଚଳର ନଦୀକୁ ଜଳ ଆଣିବାକୁ ଯାଉଛନ୍ତି । ସେମାନଙ୍କୁ ବହୁତ ବାଟ ଯିବାକୁ ହେବ । ତେଣୁ ସେମାନେ ସମୟ ବିତାଇବା ପାଇଁ ଗୀତ ଗାଉଛନ୍ତି । ଏହା କୋହିଟା ମନକୁ ଏକ ଧାରଣା ଯୋଗାଇ ଦେଲା । ପାଣି !

ଗ୍ରାମର ସବୁଠାରୁ ବଡ ସମସ୍ୟା ହେଉଛି ପାଣି । ଯଦି ସେ ଗୋଟିଏ କୂଅ ଖୋଳି ଦେଇପାରେ, ତେବେ ସେ ଗ୍ରାମବାସୀଙ୍କୁ ଅନେକ କଷ୍ଟରୁ ଉଦ୍ଧାର କରି ପାରିବ । କୋହିଟୋ ସ୍ଥିର କଲା, ସେ ଠିକ୍ ସେହି ସ୍ଥାନରେ ଗୋଟିଏ କୂଅ ଖୋଳିବ ।

ସେ ଖୋଳିବା ଆରମ୍ଭ କଲା । ତା'ପରି ଗୋଟିଏ ବାଳକ ପାଇଁ ଏହା ବହୁତ କଷ୍ଟକର କାମ ଥିଲା । କିନ୍ତୁ କୋହିଟୋ ଭାଙ୍ଗି ପଡିଲା ନାହିଁ । ସେ ଗୋଟିଏ ମୁହୂର୍ତ୍ତ ବି ନଷ୍ଟ ନ କରି ଯେତେବେଳେ ସମୟ ମିଳିଲା ଖୋଳି ଚାଲିଲା । ବର୍ଷ ପରେ ବର୍ଷ ବିତିଗଲା । କୋହିଟୋ ଏବେ ଏକ ପୂର୍ଣ୍ଣ ଯୁବକ । ହଠାତ୍ ଦିନେ ସେ ଖୋଳୁଥିବା ସମୟରେ ମାଟି ଭିତରୁ ପାଣି ଫୁଆରା ଉଠି ତା' ମୁହଁ ଓଦା ହୋଇଗଲା । ସେ ଉଲ୍ଲସିତ ହୋଇ ଉଠିଲା । ଯା ହେଉ, ଶେଷରେ ପାଣି ମିଳିଲା ।

କିଛି ଦିନ ଭିତରେ କୂଅଟି ବ୍ୟବହାର ଉପଯୋଗୀ ହୋଇଗଲା । ସେ ତା'ର *ତୁଙ୍ଗାସ୍* ବାହାର କରି ଜଳରେ ଭରି ଦେଲା । ଯେତେବେଳେ



ସେହି ବାଟ ଦେଇ ଝିଅ ମାନଙ୍କୁ ଗୀତ ଗାଇ ଗାଇ ପାଣି ଆଣିବାକୁ ଯାଉ ଥିବାର ଦେଖିଲା, ସେ ତା'ଙ୍କ ପଛରେ ଗୋଡାଇ କହିଲା, ''ଏତେ ଦୂର ଯିବା କ'ଣ ଦରକାର ? ମୋ କୂଅକୁ ଆସ । କାଚକେନ୍ଦୁ ପରି ପାଣି ଭର୍ତ୍ତି ହୋଇଅଛି ।'' ପ୍ରଥମେ ସେମାନେ ତା' କଥାରେ ବିଶ୍ୱାସ କଲେ ନାହିଁ । କିନ୍ତୁ କୌତୁହଳ ବଶତଃ ସେମାନେ ତା' ପଛେ ପଛେ ବାହାରିଲେ । କୂଅ ଭିତରେ ଥଣ୍ଡାଜଳ ଉଛୁଳି ଖେଳାଉଥିବାର ଦେଖି ସେମାନେ ଚକିତ ହୋଇ ପଡିଲେ ।

ଖୁବ୍ ଶୀଘ୍ର ଗାଁ ସାରା ଲୋକ କୋହିଟୋର କୂଅ ବିଷୟରେ ଜାଣିଗଲେ । ସମସ୍ତେ ତା'ର ଏପରି କାମକୁ ପସନ୍ଦ କଲେ । କୋହିଟୋ ଏବେ ଗ୍ରାମର ଜଣେ ଗୁରୁତ୍ୱପୂର୍ଣ୍ଣ ଲୋକ ।

କିନ୍ତୁ ବେଶି ଦିନ ପାଇଁ ନୁହେଁ । କୋହିଟୋର ଖ୍ୟାତି ମେଘ ରାଜରେ ଥିବା କିନ୍ନର ରାଜ୍ୟକୁ

## ମୁଣ୍ଡ ଶିକାର

ପ୍ରାଚୀନ କାଳରେ ମୁଣ୍ଡ ଶିକାର ଥିଲା ନାଗା ଜୀବନ ଧାରାର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ଜଣେ ଲୋକକୁ ଯଦି ଗୋଟିଏ ବି ମୁଣ୍ଡ ଶିକାର କରିବାର ବାହାଦୁରୀ ମିଳି ନ ଥିଲା, ତେବେ ତା' ପାଇଁ କନିଆ ଖୋଜିବା ବଡ କଷ୍ଟକର ଥିଲା ! ନାଗାମାନେ ମଣିଷ ଶିକାର କରୁଥିଲେ ବା ମାରୁଥିଲେ ଓ ତା'ର ମୁଣ୍ଡ ନିଜ ଘରେ ଗୌରବର ସନ୍ତକଭାବେ ସାଇତି ରଖୁଥିଲେ । ମୁଣ୍ଡକୁ ଭଲଭାବେ ପରିଷ୍କାର କରି ରଖାଯାଉଥିଲା ।





ମଧ ବ୍ୟାପିଗଲା ଓ ସେମାନେ ମଧ ସେହି କୂଅକୁ ବାରମ୍ବାର ଆସିଲେ । କିନ୍ନର କନ୍ୟାମାନେ ରାତ୍ରିରେ, ଜହ୍ନ ଉଇଁବା ପରେ ସେହି କୂଅରେ ସ୍ନାନ କରିବା ପାଇଁ ଉଡି ଆସନ୍ତି । ସକାଳ ହେବାଯାଏଁ ସେଠାରେ ବୁଲାବୁଲି କରି ପୁଣି ନିଜ ରାଜ୍ୟକୁ ଫେରି ଯାଆନ୍ତି । ସେମାନଙ୍କର ଏପରି ଆଚରଣରେ କୂଅର ପାଣି ଅପରିଷ୍କାର ହେବା ସ୍ୱାଭାବିକ କଥା । ସେମାନଙ୍କ ଡେଣାର ପର, ଫୁଲ, ଆହୁରି ଅନେକ ଜିନିଷ କୂଅ ପାଣିରେ ଭାସୁଥିଲା ।

ଗ୍ରାମବାସୀ ମାନେ ରାଗିଗଲେ, ''କିଏ ସେ କୂଅ ପାଣିକୁ ଏତେ ମଇଳା କରୁଛି ?'' ସେମାନେ କୋହିଟୋ ପାଖରେ ପ୍ରତିବାଦ ଜଣାଇଲେ । ବିଚରା ! ସେ ଏ.ବିଷୟରେ କିଛି ଜାଣି ନ ଥିଲା । କିନ୍ତୁ ଗ୍ରାମବାସୀ ମାନେ ଏହା ବିଶ୍ୱାସ କରିବାକୁ ପ୍ରସ୍ତୁତ ନ ଥିଲେ । ''ନିଶ୍ଚୟ ତୁମେ ଅନ୍ୟମାନଙ୍କୁ ଏହି କୂଅ ବ୍ୟବହାର କରିବା ପାଇଁ ଅନୁମତି ଦେଉଛ । ସେଥିପାଇଁ ଏହା ଆଗ ପରି ନିର୍ମଳ ରହୁନାହିଁ ।'' ସେମାନେ ଧମକ ଦେଲେ, ''ଯଦି ଏପରି ହୁଏ, ତେବେ ଆମେ ତୋତେ ଗ୍ରାମରୁ ବାହାର କରି ଦେବୁ ।''

କୋହିଟୋ ଚିନ୍ତା କଲା ଯେ, ତା'କୁ ଏହି ବିଷୟରେ କିଛି କରିବାକୁ ପଡିବ ।

ତେଣୁ ଦିନେ ସେ ରାତ୍ରିରେ କୂଅ ପାଖରେ ଲୁଚି ବସି ଅପେକ୍ଷା କଲା । ବାସ୍, କିନ୍ନର କନ୍ୟାମାନେ ସବୁଦିନ ପରି ସେଦିନ ମଧ୍ୟ ଆସି ପହଞ୍ଚିଲେ । ସେମାନେ ତା'ଙ୍କର ପକ୍ଷ ଖୋଲିଦେଇ ଶୃଙ୍ଖଳା ଜାଗାରେ ରଖିଦେଲେ ଓ ତା'ପରେ ପାଣି ଭିତରକୁ ଡିଆଁ ମାରିଲେ । ''ଓଃ, ତେବେ ତୁମେମାନେ ଏପରି କରୁଛ !'' କୋହିଟୋ ଚିନ୍ତା କଲା, ''ତୁମେ ସବୁ ଗ୍ରାମରେ ମୋତେ ବଦ୍‌ନାମ କରୁଛ, ମୁଁ ତୁମକୁ ପାଠ ଶିଖାଇବି ।'' ସେ ଧୀରେ ଧୀରେ ସେମାନେ ପକ୍ଷ ରଖିଥିବା ସ୍ଥାନକୁ ଗଲା ଓ ସେଥିରୁ ଗୋଟିଏ ପର ଭିଡିଆଣି ଅନ୍ଧାର ଭିତରେ ଲୁଚିଗଲା ।

ଯେତେବେଳେ ସୂର୍ଯ୍ୟଙ୍କର ପ୍ରଥମ କିରଣରେ ଦିଗ୍‌ବଳୟ ରକ୍ତିମ ବର୍ଣ୍ଣରେ ରଂଜିତ ହେଲା । କିନ୍ନର କନ୍ୟାମାନେ କୂଅ ଭିତରୁ ବାହାରି ଆସିଲେ । ସେମାନେ ତରତର ହୋଇ ନିଜର ପକ୍ଷ ଖଞ୍ଜିଦେଲେ ଓ ଉଡି ପଳାଇଲେ । କେବଳ ଜଣେ କନ୍ୟା ରହିଗଲା । ''ମୋ ପାଇଁ ଅପେକ୍ଷା କର ! ମୁଁ ମୋ ପକ୍ଷ ଖୋଜି ପାଉନାହିଁ, ମୋ ପାଇଁ ଟିକେ ଖୋଜିଦିଅ ।'' କିନ୍ତୁ ତା'ର ବାନ୍ଧବୀମାନେ ସେ କଥା ଶୁଣିଲେ ନାହିଁ । ଶେଷରେ ତା'କୁ ଛାଡି ସମସ୍ତେ ପଳାଇଲେ । ସେ କାନ୍ଦିଲା ।

ଏବେ କୋହିଟୋ ଲୁଚିଥିବା ସ୍ଥାନରୁ ବାହାରକୁ ଆସିଲା ।

କନ୍ୟା କେବଳ କାନ୍ଦୁଥାଏ ଓ କାନ୍ଦୁଥାଏ । କୋହିଟୋର ହୃଦୟ ତରଳି ଗଲା । କିନ୍ନର କନ୍ୟା- ଖୁବ୍ ସୁନ୍ଦରୀ, ପୁଣି ଏବେ ନିରାଶ୍ରୟ । ସେ ପଚାରିଲା, ''ତୁମେ ମୋତେ ବିବାହ କରିବ ? ମୁଁ ତୁମକୁ ଖୁବ୍ ଭଲରେ ରଖିବି ।'' ବିଚାରୀର ଆଉ ଚାରା ବା କ'ଣ ! ସେ ରାଜି ହେଲା ।

କୋହିଟୋ ତା'କୁ ବିବାହ କରି ଗ୍ରାମକୁ ନେଇ ଆସିଲା । ସେମାନେ ତା'ଙ୍କ ପାଇଁ ଗୋଟିଏ ଘର ତୋଳିଲେ । କେତେ ବର୍ଷ ବିତିଗଲା । ସେ ଭାତ, ମାଂସ, *ଜୁଠୋ, ରୁହି* ରାନ୍ଧିବା, ଟୁଡି ବୁଣିବା, ନାଗା ଗୀତ ଗାଇବା ଶିଖିଗଲା । କିନ୍ତୁ ତା'ର

## ଜନଜାତି

ନାଗାଲାଣ୍ଡ ଏକ ଜନଜାତି ଅଧ୍ୟୁଷିତ ପ୍ରଦେଶ । ୧୪ଟି ମୁଖ୍ୟ ଜନଜାତିକୁ ରାଜ୍ୟରେ ଚିହ୍ନଟ କରାଯାଇଛି । ସେମାନଙ୍କ ମଧ୍ୟରେ ପ୍ରମୁଖ ଜାତି ହେଲେ ଆନ୍‌ଗାମୀ, ଆଓ, ଚାଖେସାଙ୍ଗ୍, ଚାଙ୍ଗ, ଖେମୁନ୍ ଗାନ୍ । କୋନ୍ୟାକ୍, ଲୋଥା ଓ ଫୋମ୍ । ପ୍ରତ୍ୟେକ ଜାତିର ପରମ୍ପରା, ପୋଷାକ ଓ ଭାଷାର ବିଶେଷତ୍ୱ ରହିଛି । ଅଳଙ୍କାର, ବେଶ ପୋଷାକ ଓ ଟୋପି ମଧ୍ୟ ଗୋଟିଏ ଜାତି ଠାରୁ ଅନ୍ୟ ଜାତିର ଭିନ୍ନ । ସେହି ଜାତି ସବୁ ଏବେ ବିଭିନ୍ନ ଉପଜାତିରେ ବିଭକ୍ତ ହୋଇ ଗଲେଣି ।





କୋହିଟୋ ତା'କୁ ଏପରି ଲୁଚାଇଥିଲା ଯେ, ସେ ପାଉ ନ ଥିଲା । ଥରେ ତା' ମନକୁ ଆସିଲା, ''କେଉଁଠି ପକ୍ଷ ଲୁଚା ଯାଇପାରେ ? ନିଶ୍ଚୟ ଏପରି କୌଣସି ଜାଗାରେ, ଯେଉଁଠିକୁ ସେ ଯିବାକୁ ଘୃଣା କରେ ଓ ସେଠାକୁ କେବେ ବି ଯିବନାହିଁ । ଘରେ ଏପରି ସ୍ଥାନ କେଉଁଠି ଅଛି ?'' କୁକୁଡା ଭାଡି ନିଶ୍ଚୟ ! ତା'ର ମୁଣ୍ଡକୁ ଏପରି ଚିନ୍ତା ପ୍ରବେଶ କରିବା ମାତ୍ରେ ସେ ସିଧାସଳଖ କୁକୁଡା ଭାଡି ପାଖକୁ ଚାଲିଲା ।

ସେହି ସ୍ଥାନ ଏପରି ଦୁର୍ଗନ୍ଧମୟ ଓ ଅସନା ଥିଲା ଯେ, ସେ ସେଠାରୁ ତତ୍‌କ୍ଷଣାତ୍ ବାହାରି ଆସିବାକୁ ଚାହିଁଲା । ମାତ୍ର ତା' ହାତରେ କିଛି ଗୋଟିଏ କୋମଳ ଜିନିଷ ବାଜିଲା । ସାହସର ସହିତ ବାହାରକୁ ବାହାର କରି ଆଣିଲା

ମେଘ ରାଇଜର ଘରକୁ ସେ ଝୁରି ହେଉଥିଲା ।

ଯେତେବେଳେ କୋହିଟୋ କାମକୁ ବାହାରି ଯାଉଥିଲା, ସେ ତା'ର ପକ୍ଷ ଖୋଜୁଥିଲା । କିନ୍ତୁ

ତା'ର ଡେଣା ! ସମାନ୍ୟ ମଇଳା ହୋଇ ଯାଇଛି, ଖରାପ ଗନ୍ଧ ବାହାରୁଛି ଓ ଧାର ଆଡକୁ ଝଡି ଯାଇଛି, କିନ୍ତୁ ଯେତେହେଲେ ତା'ର ଡେଣା ତ !

## ହସ୍ତଶିଳ୍ପ



ନାଗା ମାନଙ୍କର ପାରମ୍ପରିକ ହସ୍ତଶିଳ୍ପ ଓ ତନ୍ତବୁଣା ଶୈଳୀରେ ମୁଣ୍ଡଶିକାର ମୁଖ୍ୟତଃ ସ୍ଥାନ ପାଇଥାଏ ।

ନାଗାମାନେ ସେମାନଙ୍କର କାଠ ଖୋଦେଇ କାମ, ବାଉଁଶ କାମ ଓ ପାତ୍ର ଗଠନ ପାଇଁ ଜଣାଶୁଣା । ନାଗା ଜଙ୍ଗଲରେ ବେତ ଓ ବାଉଁଶ ପ୍ରଚୁର ପରିମାଣରେ ମିଳେ । ତେଣୁ ସେମାନେ କୁଶଳୀ ଝୁଡି-ବୁଣାଳୀ ହେବା ସ୍ୱାଭାବିକ । ସେମାନେ ବାଉଁଶରୁ ତାଟି ଓ ମସିଣା ମଧ୍ୟ ପ୍ରସ୍ତୁତ କରନ୍ତି । ବେତରୁ ବେକର ମାଳି, ବାହୁଟି ଓ ଗୋଡର ଅଳଙ୍କାର ମଧ୍ୟ ପ୍ରସ୍ତୁତ କରାଯାଏ ।

ସେ ସେଥିରୁ ଧୂଳି ଝାଡିଦେଇ ନିଜ ପିଠିରେ ଖଞ୍ଜିଦେଲା । ମେଘ ରାଇଜରେ ଥିବା ତା'ର ଘରକୁ ଫେରିଗଲା ।

ଯେତେବେଳେ ରାତି ହେଲା ଆଉ କୋହିଟୋ ଘରକୁ ଫେରିଲା, ସେ କେଉଁଠାରେ ବି ତା'ର ସ୍ତ୍ରୀକୁ ଦେଖିବାକୁ ପାଇଲା ନାହିଁ । ସେ ଶେଷକୁ କୁକୁଡା ଭାଡି ପାଖକୁ ଧାଇଁଲା, ଯେଉଁଠାରେ ସେ ପକ୍ଷ ଲୁଚାଇଥିଲା, ସେଠାରେ ଆଉ ପକ୍ଷ ନ ଥିଲା ! ଏବେ ସେ ଜାଣି ପାରିଲା ଯେ, ସେ ତା'କୁ ହରାଇ ସାରିଛି ।

ସେ ତା'ର ଘର ଆଗରେ ବସି ବଡ ପାଟିରେ କାନ୍ଦିଲା । ଏତିକି ବେଳେ ହଠାତ୍ କେଉଁଠୁ ଏକ ଧଳା କାଉ ଉଡି ଆସି ତା' ପାଖରେ ବସିଲା ଓ ତା'କୁ ସାନ୍ତ୍ୱନା ଦେଇ କହିଲା, ''କୋହିଟୋ ! କାନ୍ଦ ବନ୍ଦ କର ! ମୁଁ ତା'କୁ ଆକାଶରେ ଉଡି ଯାଇଥିବାର ଦେଖିଛି ! ତୁମେ ଯଦି ଚାହଁ ମୁଁ ତୁମକୁ ସେଠିକୁ ନେଇଯିବି, ମାତ୍ର ତୁମକୁ ମୋର ଉପକାର ଶୁଝିବାକୁ ପଡିବ ।''

''ନିଶ୍ଚୟ, ଭାଇ ! ନିଶ୍ଚୟ ! କୁହ, ମୋତେ ତୁମ ପାଇଁ କ'ଣ କରିବାକୁ ହେବ ?'' କୋହିଟୋ ଉତ୍କଣ୍ଠିତ ହୋଇ ପଚାରିଲା ।

''ମୋତେ ଗୋଟିଏ କଳା କାଉ କରିଦିଅ ! ମୋତେ ଧଳା ରହିବାକୁ ଭଲ ଲାଗୁନାହିଁ । ମୋର ସାଙ୍ଗଭାଇମାନେ ଏହି ବିଚିତ୍ର ବେଶ ପାଇଁ ମୋତେ ପାଖରେ ପୂରାଉ ନାହାଁନ୍ତି ।''

କୋହିଟୋ ପ୍ରତିଜ୍ଞା କଲା ଯେ ସେମାନେ କିନ୍ନର ରାଜ୍ୟରେ ପହଞ୍ଚିବା ମାତ୍ରେ ସେ ତାହା କରିବ । ତା'ପରେ ସେ କାଉ ପିଠିରେ ବସି ପଡିଲା ଓ ଉପରକୁ ଉଡିଗଲା ।

ବହୁ ଦୂର ଗଲାପରେ ଶେଷରେ ସେମାନେ ସେଠାରେ ପହଞ୍ଚିଲେ । କିନ୍ନର ମାନେ ତା'କୁ ତା'ର ସ୍ତ୍ରୀର ଘରକୁ ନେଇଗଲେ ଓ ସେ ବଡ ଆଦରରେ ସ୍ୱାଗତ ଜଣାଇଲା । ''ମୋତେ ଆଉ ପୃଥିବୀକୁ ଫେରି ଯିବାକୁ କୁହ ନାହିଁ । ଆମେ ଏଠାରେ ସୁଖ, ଶାନ୍ତିରେ ରହିପାରିବା ।'' ସେ ଅନୁରୋଧ କଲା ।

କୋହିଟୋ ଆନନ୍ଦରେ ରାଜିହେଲା ।

## ଟୀକା

*ମୋରୁଙ୍ଗ:* ଅବିବାହିତ ଯୁବକଙ୍କର ରାତ୍ରିଯାପନ ସ୍ଥଳୀ

*ଦାଓ:* ଏକ ପ୍ରକାର ବର୍ଚ୍ଛା

*ଖାଙ୍ଗ:* କାନ୍ଧରେ ଝୁଲା ହେଉଥିବା ବାଉଁଶ ଝୁଡି

*ଛୁଂଗାସ୍:* ବାଉଁଶରେ ତିଆରି ଜଳପାତ୍ର

*କିନ୍ନର:* ଆକାଶର ପରୀମାନଙ୍କ ପରି ଏକ ଜାତି

*ଝଠୋ ଓ ରୁହି:* ହାତରୁ ପ୍ରସ୍ତୁତ ମଦ୍ୟ



# ଚତୁର ତେନାଲୀ ରାମନ୍



ଦିନେ ବିଜୟନଗରର ଶାସକ କୃଷ୍ଣଦେବ ରାୟଙ୍କର ଦରବାର ଚାଲିଥାଏ । ଦୁଇଜଣ ପରିଚାରକ ଗୋଟିଏ ପଟ୍ଟଚିତ୍ରର ଦୁଇ ପାଖକୁ ଧରି ପାରିଷଦମାନଙ୍କୁ ଦେଖାଉଥାନ୍ତି । ଏହା ରାଜଙ୍କର ସମ୍ପୂର୍ଣ୍ଣ ରାଜକୀୟ ଠାଣିର ଏକ ବିରାଟ ପ୍ରତିକୃତି ଥିଲା । ରାଜା ସେ ଦିଗରେ ନଜର ପକାଇ ଖୁବ୍ ଉତ୍ଫୁଲ୍ଲିତ ହେଉଥାନ୍ତି ।

ପାରିଷଦମାନଙ୍କର 'ବାଃ', 'ଚମତ୍କାର' ଏପରି ଶବ୍ଦ ତା'ଙ୍କ କାନରେ ବାଜୁଥାଏ । 'ମୁଁ ଏକ ସହସ୍ର ସ୍ୱର୍ଣ୍ଣ ମୁଦ୍ରା -ଚିତ୍ରକରକୁ ଦେଇଛି ! ଆପଣମାନେ କ'ଣ ଭାବୁଛନ୍ତି ?'' ସେ ପାରିଷଦ ମାନଙ୍କର ମନ୍ତବ୍ୟ ଜାଣିବାକୁ ଚାହିଁଲେ ।





ରାଜାଙ୍କ ପାଖରେ ବସିଥିବା ଜଣେ ପାରିଷଦ ଠିଆ ହୋଇପଡି କହିଲେ, ''ଏହା ଖୁବ୍ ଭଲ ହୋଇଛି ମଣିମା ! ଏଥିରେ ଆପଣଙ୍କର ସୌନ୍ଦର୍ଯ୍ୟର ପ୍ରତ୍ୟେକ ଠାଣି ଫୁଟି ଉଠିଛି । ଏହାକୁ କିଏ ପ୍ରସ୍ତୁତ କରିଛନ୍ତି ହଜୁର ?'' ତା' ମୁହଁରେ ଏକ ବିଶାଳ ହସ ଲାଖିଥାଏ ।

ରାଜା କୌଣସି ଉତ୍ତର ଦେଲେ ନାହିଁ । ସେ କେବଳ, ''ହଁ ଖୁବ୍ ଭଲ'', ''ଜୀବନ୍ତ ମନେ ହେଉଛି'' ଏପରି ମନ୍ତବ୍ୟ ଶୁଣୁଥାନ୍ତି । ସେ ବ୍ୟତିବ୍ୟସ୍ତ ହୋଇ ତେନାଲୀଙ୍କୁ ପଚାରିଲେ, ''ହେଃ ତେନାଲୀ ! ତୁମେ କାହିଁକି କିଛି କହୁନାହଁ ?'' ରାଜା ତା'ଙ୍କର ପ୍ରିୟ ପାରିଷଦଙ୍କୁ ପଚାରିଲେ ।





''କିନ୍ତୁ, ମଣିମା, ଆପଣଙ୍କ ମୁଖର ଅନ୍ୟ ପାର୍ଶ୍ୱଟି କାହିଁ ?'' ତେନାଲୀ ରାମନ୍ କହିଲେ । ''ମୁଁ ଦିନେ ଏହାଠାରୁ ଭଲ ଚିତ୍ର ଆଙ୍କି ଆପଣଙ୍କୁ ଦେଖାଇବି ।'' ରାଜା ଖୁବ୍ ରାଗିଗଲେ ଓ କହିଲେ ''ତୁମେ ଗୋଟିଏ ଚିତ୍ରକୁ ଦେଖିଲାବେଳେ ବହୁତ କଥା ପରିକଳ୍ପନା କରିବା କଥା । ଯାଅ ! ଚିତ୍ର ଆଙ୍କି ନ ଆଣିବା ଯାଏଁ ଏଠାକୁ ଆସିବ ନାହିଁ ।''



ଏକ ମାସ ବିତିଗଲା । ''ତେନାଲୀ କାହାଁନ୍ତି ? ସେ କ'ଣ ଏବେ ଯାଏଁ ଚିତ୍ର ଆଙ୍କୁଛନ୍ତି ? ରାଜା ଜାଣିବାକୁ ଚାହିଁଲେ । ଜଣେ ପାରିଷଦ କହିଲେ: ''ଆମେ କେହି ତାଙ୍କୁ ଚିତ୍ର ଆଙ୍କୁଥିବାର ଦେଖିନାହୁଁ ।'' ଆଉ ଜଣେ କହିଲେ: ''ସେ ଆଗ ତୁଳୀ ଧରି ପାରିବେ କି ?'' କେତେକ ଜୋର୍‌ରେ ହସି ଉଠିଲେ । ମାତ୍ର ଦୁଇ ଜଣଙ୍କୁ ସାଙ୍ଗରେ ଧରି ତେନାଲୀ ସେଠାକୁ ପ୍ରବେଶ କରିବାରୁ ସମସ୍ତେ ନୀରବ ହୋଇଗଲେ ।



ତେନାଲୀ ମୁଣ୍ଡ ତଳକୁ କରି କହିଲେ: ''ମୋର ଚିତ୍ର ଦେଖାଇବା ପାଇଁ ଅନୁମତି ମିଳି ପାରେ କି ? ରାଜା ମଥା ହଲାଇଲେ । ଦୁଇଜଣ ଲୋକ ଗୋଟିଏ ଲମ୍ବା ଚିତ୍ରପଟ ଫିଟାଇଲେ । ପାରିଷଦ ମାନେ ବେକ ଲମ୍ବାଇଲେ । ରାଜା ଚିତ୍କାର କରି ଉଠିଲେ, ''ଏହା କେଉଁ ପ୍ରକାରର ଚିତ୍ର ? ମୁଁ କେବଳ ଗୋଟିଏ ଘୋଡାର ଲାଞ୍ଜ ମାତ୍ର ଦେଖିପାରୁଛି ?''



''ମଣିମା, ଆପଣଙ୍କୁ ଆଉ ସବୁ ପରିକଳ୍ପନା କରିବାକୁ ହେବ ।'' ତେନାଲୀ ଆଖି ମିଟିକା ମାରି କହିଲେ, ''ଘାସ ଖାଇ ସାରିବା ପରେ ଘୋଡା ଆଗକୁ ଚାଲିଯାଇଛି । ସେଥିପାଇଁ ଚିତ୍ରରେ ତା'ର ଶରୀର ବାହାରେ ରହିଯାଇଛି !''

ତୁମେ ଭାରତ ବିଷୟରେ କେତେ କଣ ଜାଣ ? ତୁମ ଦେଶର ବିଭିନ୍ନ ପ୍ରଦେଶର ଲୋକଙ୍କ ରଚି, ଚାଲିଚଳନ ସମ୍ପର୍କରେ ଆମେ ଜାଣିବା ଆବଶ୍ୟକ ନୁହେଁ କି ? ଏଥର ଆମେ ମହାନ୍ ଭାରତୀୟ ଜୀବନ, ସଂସ୍କୃତି, ସଭ୍ୟତା ସମ୍ପର୍କରେ କେତେକ ବିରଳ ତଥ୍ୟ ପ୍ରଦାନ କରୁଛୁ । ଏହି ବିଭାଗଟି ତୁମକୁ ବେଶ୍ ଭଲ ଲାଗିବ ।

## ଭାସ୍ୱର ଭାରତ

# ପୃଥିବୀର ପ୍ରଥମ ଶଲ୍ୟ ଚିକିତ୍ସକ

ହୁଏତ ଆଜି ସେ ସ୍ମୃତିର ଗର୍ଭରେ ! କିନ୍ତୁ ସେ ଥିଲେ ତାଙ୍କ ସମୟର କେବଳ କାହିଁକି ବହୁ ବର୍ଷଯାଏଁ, ଜଣେ ବିସ୍ମୟ । ସେ ହେଉଛନ୍ତି- ଶୁଶ୍ରୁତ-ପୃଥିବୀର ପ୍ରଥମ ଚିକିତ୍ସକଙ୍କ ଗୌରବ ବହନ କରନ୍ତି । ଖ୍ରୀଷ୍ଟପୂର୍ବ ଆଠଶହ ବର୍ଷ ପୂର୍ବେ ସେ ଚକ୍ଷୁର ମୋତିଆବିନ୍ଦୁ ଅସ୍ତ୍ରୋପଚାର ଠାରୁ ଆରମ୍ଭ କରି ମୂତ୍ରାଶୟରୁ ପଥର ନିଷ୍କାସନ, ଅସ୍ତ୍ରୋପଚାର ଦ୍ୱାରା ଗର୍ଭସ୍ଥ ଶିଶୁକୁ ବାହାରକୁ ଆଣିବା, ଲେପ ଅସ୍ତ୍ରୋପଚାର ପ୍ରଭୃତି ବହୁ ଅସଂଭବ ଚିକିତ୍ସାର ସୂତ୍ରପାତ କରିଥିଲେ ।

ସେ ପଶୁ, ପକ୍ଷୀ ଓ ପନିପରିବାର ତନ୍ତୁ ଓ ମଣିଷର କେଶ ଦ୍ୱାରା ବାହାର କ୍ଷତ ଗୁଡ଼ିକୁ ଅସ୍ତ୍ରୋପଚାର ପରେ ସିଲାଇ କରିଦେଉଥିଲେ । ଶୁଶ୍ରୁତ କଳା ଜନ୍ଦାର ତନ୍ତୁରେ ମଣିଷ ଭିତରର କୋଷ ଗୁଡ଼ିକର ସିଲାଇ କରି ଦେଉଥିଲେ । କ୍ଷତର ଦୁଇ ପାର୍ଶ୍ୱକୁ ଟାଣି ଏକାଠି କରିବାପରେ ଜନ୍ଦା ଗୁଡ଼ିକୁ କ୍ଷତ ପାଖରେ ଛାଡ଼ି ଦିଆଯାଏ । ଜନ୍ଦାର ଶୁଣ୍ଢ କ୍ଷତକୁ କାମୁଡ଼ି ଧରେ । ଏହି ସମୟରେ ଶୁଶ୍ରୁତ ଜନ୍ଦାର ମୁଣ୍ଡରୁ ଗଣ୍ଡି ଅଲଗା କରି ଦିଅନ୍ତି । କିଛି ଦିନ ପରେ ଦେଖିବାକୁ ମିଳେ, କ୍ଷତ ଶୁଖି ଯାଇଛି ।



ଜହ୍ନମାମୁ

# କେରଳର 'ବ୍ରେକ୍-ଡ୍ୟାନ୍ସ'

ପଚାଶଜଣ ଶକ୍ତିଶାଳୀ ମଣିଷ ଏକ ଦୃଢ଼ ପଟା ଉପରେ ମନଇଚ୍ଛା ଦୀର୍ଘ ସମୟ ଧରି ଡେଇଁଲେ, କଣ ହେବ ତାର ଅବସ୍ଥା ? ତାହା ଭାଙ୍ଗିଯିବା ସୁନିଶ୍ଚିତ । ଏହା ବିଶ୍ୱାସ ଯୋଗ୍ୟ କି ନୁହେଁ ? କିନ୍ତୁ ଏହା କୌଣସି ପ୍ରକାର କୌତୁକ ନୁହେଁ । ବରଂ ଏହା କେରଳର ଏକ ଲୋକ ନୃତ୍ୟ 'ଚାଭିଟ୍ଟୁ ନାଟକମ୍' !



୧୬ଶହ ଶତାବ୍ଦୀରେ ପର୍ତ୍ତୁଗୀଜ୍ ମାନେ ଯେତେବେଳେ ଭାରତର କେରଳରେ ପଦାର୍ପଣ କଲେ, ସେମାନେ ତାଙ୍କ ସାଥିରେ ଅନେକ କଳା ଓ ଭାସ୍କର୍ଯ୍ୟ ଆଣିଥିଲେ ସେଥିମଧ୍ୟରୁ ଇରୋପୀୟ ଅପେରା ସଂସ୍କୃତି ଅନ୍ୟତମ । ଏହି ସଂସ୍କୃତି ସ୍ଥାନୀୟ କଥାକଳି ସହିତ ମିଶି ଏକ ନୃତ୍ୟ-ନାଟିକାର ରୂପ ଗ୍ରହଣ କଲା ।

ଏହି ନୃତ୍ୟନାଟିକାରେ ଇରୋପୀୟ ଇତିହାସ ସହିତ ଖ୍ରୀଷ୍ଟିଆନ କାହାଣୀ ସଂଯୋଗ ଘଟୁଥିଲା ଅଭିନୟ କରୁଥିବା ଅଭିନେତାଗଣ ନାଟକ ମଞ୍ଚରେ ସଂଳାପ ଗୁଡିକ ଆବୃତ୍ତି କରୁଥିଲେ । କଥାକଳିପରି ଏହି ନୃତ୍ୟ-ନାଟିକାର ଯବନିକା ଯୁଦ୍ଧ ବା ପରସ୍ପର ଦ୍ୱନ୍ଦ ମଧ୍ୟରେ ପରିସମାପ୍ତି ଘଟୁଥିଲା । ଏହି ଯୁଦ୍ଧରେ ୫୦ଜଣ ଅଭିନେତା ଯେଉଁ ଭୟଙ୍କର ଯୁଦ୍ଧରେ ଅବତୀର୍ଣ୍ଣ ହେଉଥିଲେ, ସେଥିରେ ଯେତେ ଦୃଢ଼ ମଞ୍ଚହେଲେ ଭାଙ୍ଗିଯିବା ସ୍ୱାଭାବିକ୍ । ଯଦି ମଞ୍ଚଟି ଭାଙ୍ଗି ନଯାଏ, ତେବେ ସେ କି ପ୍ରକାରର ନୃତ୍ୟ ! କୁହାଯାଏ ତାହାହିଁ ନୃତ୍ୟର ସଫଳତା ଓ ବିଫଳତାକୁ ସୂଚିତ କରେ !

# ଶାନ୍ତ କାଶ୍ମୀର

କାଶ୍ମୀରର ଥଣ୍ଡା ସହିବା କି କଷ୍ଟ ! କିନ୍ତୁ ତୁମେ ଆଶ୍ଚର୍ଯ୍ୟ ହେବ କାଶ୍ମୀର ଲୋକ କିପରି ବା ଏତେ ଶାନ୍ତ ମନେ ହୁଅନ୍ତି- ଏତେ ଥଣ୍ଡା ସହିବା ସତ୍ତ୍ୱେ !

ଗୋପନ କଥାଟି ହେଲା- ସେମାନଙ୍କ ପାଖରେ ରହିଛି- *'ଆଙ୍ଗିଠି'*- ଯାହାକି ସେମାନଙ୍କର କପଡା ତଳେ ଲୁଚେଇ ରଖିଛନ୍ତି । 'ଆଙ୍ଗିଠି' କହିଲେ ଏକ ଛୋଟ ମାଟି ପାତ୍ର ଯେଉଁଥିରେ ଜଳନ୍ତା କୋଇଲା କେଇଖଣ୍ଡ ରହିଥାଏ । ଏହା ଏକ ଛୋଟ ବେତ ଝୁଲାମୁଣିରେ ଥାଏ ଓ କାଶ୍ମୀର ଲୋକ ଏହାକୁ ତାଙ୍କର ଅଣ୍ଟା ଚାରି ପାଖରେ ଗୁରେଇ ରଖିଥାନ୍ତି ।



# ଥରେ ଚେଷ୍ଟା କରନ୍ତୁନା !



'ମାଲଖମ୍ବ' ଏକ ପ୍ରାଚୀନ ଖେଳ ଯାହାକି ମହାରାଷ୍ଟ୍ରରେ ଖେଳାଯାଇଥାଏ । ଏହି ଖେଳ ଏକପ୍ରକାରର *ଶାରିରୀକ ବ୍ୟାୟାମ ପ୍ରଦର୍ଶନ* ଯାହାକି ଖେଳାଳୀକୁ ସତେଜ, ସୁସ୍ଥ ଓ ସକ୍ରିୟ କରିପାରେ । ଦୁଇଟି ବିରାଟ କାୟ *ଖମ୍ବ* ମଝିରେ ଏକ ଖମ୍ବ ବନ୍ଧା ହୋଇଥାଏ, ଯା' ଉପରେ ଖେଳାଳୀଗଣ ଦେହକୁ ବଙ୍କାଇ ବୁଲାଇ ବିଭିନ୍ନ ପ୍ରକାର ଖେଳ କସରତ ଦେଖାଇଥାନ୍ତି ! ୧୦ମ ଶତାବ୍ଦରେ ପ୍ରାଚୀନ ଚାଲୁକ୍ୟ ସାହିତ୍ୟରେ 'ମାଲ୍‌ଖମ୍ବ' ସମ୍ପର୍କରେ ଲେଖା ଯାଇଛି । ଏହାପରେ ଯଦିଓ ଏହାର ବିଲୋପ ଘଟିଥିଲା, ତାପରେ ୧୯ଶ ଶତାବ୍ଦୀରେ ପେଶୱାର ବାଜୀ ରାଓ- ଦ୍ଵିତୀୟଙ୍କ ଦ୍ଵାରା ଏହା ପୁର୍ନୋଦ୍ଧାର କରାଯାଇ ଥିଲା । ସଂପ୍ରତି ବିଭିନ୍ନ ପ୍ରକାରର ମାଲଖମ୍ବ ପ୍ରଦର୍ଶିତ ହେଉଛି ଓ ଜାତୀୟ ସ୍ତରରେ ମଧ୍ୟ ଏହା ଖେଳାଯାଉଛି ।






# ଧାନ କ୍ଷେତରେ ମାଛ ଚାଷ



ଧାନ କ୍ଷେତରେ ମାଛ ଚାଷ ? ଶୁଣିବାକୁ ଭଲ ଲାଗୁ ନାହିଁ ନା ? ନା- ଏପରି ଘଟିବା ଅସମ୍ଭବ କଣ ! ଚାଲ ଭେଟିବା- 'ଅପଟାନିସ୍'ଙ୍କୁ । ଅରୁଣାଚଳ ପ୍ରଦେଶର ଆଦିମ ଅଧିବାସୀ ଗଣ ଧାନଚାଷ ସହିତ ମାଛ-ଚାଷ କରିବାରେ ଓସ୍ତାଦ୍ । ସେମାନେ ଧାନ ଗଛ ଟାଣ ଥିବା ବେଳେ ମାଛ ଛାଡ଼ି ଦିଅନ୍ତି । ତା ସହିତ ସେମାନେ ଟିକି ଟିକି ଗୁଳ୍ମ ଓ ପୋକ ଛାଡ଼ି ଦିଅନ୍ତି । ତାହା ଖାଇ ସେମାନେ ବଡ ହୁଅନ୍ତି । ଫଳରେ ଏପଟେ ମାଛ ବଡ ହୁଏ ଓ ଧାନ ଗଛ ବି ବଡ ହୁଏ । ଠିକ ସମୟରେ ଧାନ ଅମଳ ହୁଏ ଓ ମାଛ ମାନଙ୍କର ମେଳା ଲାଗେ । ମାଛ ମାରିବାରେ ଯେଉଁ ଆନନ୍ଦ, ଧାନ କାଟିବାରେ ବି କମ୍ !

ଭାରତୀୟ ପର୍ବ

# ବସନ୍ତ ପଞ୍ଚମୀ

ବସନ୍ତ ଋତୁର ଆଗମନକୁ ସାରା ଭାରତବର୍ଷ 'ବସନ୍ତ ପଞ୍ଚମୀ' ପର୍ବ ଅବସରରେ ଭବ୍ୟ ସ୍ୱାଗତ ଜଣାଏ । ଏହି ପର୍ବ ମାଘ ମାସର ଶୁକ୍ଳ ପକ୍ଷ ପଞ୍ଚମୀ ତିଥିରେ, ଯାହା ସାଧାରଣତଃ ଜାନୁୟାରୀ-ଫେବୃୟାରୀ ମାସରେ ପଡିଥାଏ । ପୂର୍ବ ଭାରତରେ, ଏହି ଦିନଟିରେ ସରସ୍ୱତୀ ପୂଜା ଅନୁଷ୍ଠିତ ହୁଏ । ଦେବୀ ସରସ୍ୱତୀଙ୍କୁ ଜ୍ଞାନ, ବିଜ୍ଞାନ, କଳା ଓ ସଙ୍ଗୀତର ପ୍ରତୀକ ଭାବେ ଗ୍ରହଣ କରାଯାଏ । ସେ ମଧ-ଶକ୍ତି ସୃଜନଶୀଳତା ଓ ପ୍ରେରଣାର ଦେବୀ ।



ପଶ୍ଚିମ ବଙ୍ଗରେ, ଦେବୀ ସରସ୍ୱତୀଙ୍କର ବିଗ୍ରହ ଏହି ଦିବସରେ ଆରାଧନା କରାଯାଏ । ପୁସ୍ତକ ଓ ସଙ୍ଗୀତର ବାଦ୍ୟଯନ୍ତ୍ର ଦେବୀଙ୍କ ମୂର୍ତ୍ତି ସମ୍ମୁଖରେ ରଖାଯାଏ । ଏହି ଦିନ ପିଲାମାନେ ପାଠ ପଢ଼ନ୍ତି ନାହିଁ । ତା' ପରେ ମୂର୍ତ୍ତି ସମୁଦ୍ର କିମ୍ବା ନଦୀରେ ବିସର୍ଜନ କରାଯାଏ, ସରସ୍ୱତୀ ପୂଜା ଅବସରରେ, ଏହି ପ୍ରଦେଶର ଛୋଟ ଝିଅମାନେ ମଧ ଶାଢ଼ୀ ପିନ୍ଧିଥାନ୍ତି !



ଦେବୀ ସମରସ୍ୱତୀଙ୍କୁ ବିଭିନ୍ନ କିସମର ପୁଷ୍ପ ନିବେଦନ କରାଯାଇ ପୂଜା କରାଯାଏ । ଏହି ଦିନ ବିଭିନ୍ନ ସ୍ଥାନରେ ଗୁଡିଉଡା ପ୍ରତିଯୋଗିତା ଆୟୋଜିତ ହୁଏ ।

ବସନ୍ତ ଏପରି ଏକ ଋତୁ, ଯେତେବେଳେ ପ୍ରକୃତିର ଶୋଭା ସମ୍ଭାରର ସର୍ବାଧିକ ପରିପ୍ରକାଶ ଘଟିଥାଏ । ଭାରତର ଉତ୍ତର ଭାଗରେ ଶସ୍ୟକ୍ଷେତ୍ର ମାନଙ୍କରେ ହଳଦିଆ ବର୍ଣ୍ଣର ସୋରିଷ ଫୁଲ ଫୁଟି

ଉଜ୍ଜଳ ଦେଖାଯାଉଥାଏ । ସମ୍ଭବତଃ ସୋରିଷ ଫୁଲର ଉନ୍ମୀଳନର ସୂଚନା ବହନ କରି, ସେହି ଆନନ୍ଦରେ ଭାଗ ନେବା ପାଇଁ, ଏହି ଦିନ ଲୋକେ ହଳଦିଆ ରଙ୍ଗର ବସ୍ତ୍ର ପରିଧାନ କରନ୍ତି ।



## କାର୍ନାଭାଲ୍

ଫେବୃୟାରୀ ମାସରେ, ଗୋଆର ପରିବେଶ ଓ ବାତାବରଣ ହର୍ଷ, ଉଲ୍ଲାସ ଓ ସଙ୍ଗୀତର ଧ୍ୱନିରେ ଅନୁରଣିତ ହୋଇ ଉଠେ । ଏହାର କାରଣ ସେମାନଙ୍କର ବାର୍ଷିକ ପର୍ବ-କାର୍ନାଭାଲ୍ ।

ଗୋଆବାସୀଗଣ ବିଶ୍ୱାସ ଯେ, ବହୁକାଳ ପୂର୍ବେ, ଗୋଆର ରାଜା ମୋମୋ ତା'ଙ୍କ ପ୍ରଜାମାନଙ୍କୁ ଆଦେଶ ଦେଇଥିଲେ ଯେ, କାର୍ନାଭାଲ୍ ପର୍ବର ତିନି ଦିନରେ କେହି କିଛି କାମ କରିବେ ନାହିଁ । ସେ ଘୋଷଣା କରିଥିଲେ: ''ମୁଁ ରାଜା ମୋମୋ ଘୋଷଣା କରୁଛି ଯେ, ମୋ ରାଜ୍ୟ ଗୋଆରେ, କାର୍ନାଭାଲ୍ ପର୍ବ ସମୟରେ କୌଣସି ପ୍ରଜା କିଛି କାମ କରି ପାରିବେ ନାହିଁ ।''

ନୃତ୍ୟ ଓ ସଂଗୀତକାର ମାନଙ୍କର ଦଳ ସାରାଦିନ ସୁନ୍ଦର ଭାବେ ସୁସଜ୍ଜିତ ଭେଳା ମାନଙ୍କରେ ନୃତ୍ୟ, ଗୀତ ପରିବେଷଣ କରନ୍ତି । ଏହି ଭେଳା ସବୁ ବିଭିନ୍ନ ଆକୃତିର ହୋଇଥାଏ ଓ ମୁଖ୍ୟତଃ ଏହି ପର୍ବ ପାଇଁ ପ୍ରସ୍ତୁତ କରାଯାଇଥାଏ । ଏହାର ଚାଳକ ମାନେ କୌତୁକିଆ, ରଙ୍ଗରଙ୍ଗିଆ ପୋଷାକ ପିନ୍ଧିଥାନ୍ତି ।

ଏହି ପର୍ବ ପାଇଁ ବିଭିନ୍ନ ଐତିହାସିକ ଘଟଣା



ଉପରେ ଆଧାରିତ ଛୋଟ ନାଟକମାନ ରଚନା କରାଯାଇଥାଏ । ଏହାକୁ 'ଫେଲୋସ୍' କୁହାଯାଏ ଓ ଏହା ମଧ୍ଯ ଭେଳା ମାନଙ୍କରେ ଅଭିନୀତ ହୁଏ ।

ପୁରୁଷ ଲୋକମାନେ ମୁହଁରେ ବହଳିଆ ପ୍ରସାଧନ ଲଗାଇଥାନ୍ତି ଓ ରଙ୍ଗ ବେରଙ୍ଗର ପୋଷାକ ସହିତ ପାରମ୍ପରିକ ଟୋପି ପିନ୍ଧିଥାନ୍ତି । ସେମାନେ ପର୍ବ ଆରମ୍ଭର କେତେ ମାସ ଆଗରୁ 'ଫେଲୋସ୍' ଗୁଡ଼ିକୁ ଅଭ୍ୟାସ କରନ୍ତି । ଲୋକମାନେ ଦଳଦଳ ହୋଇ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯାଇ ଏହାକୁ ଉପଭୋଗ କରନ୍ତି ।

ଯେତେବେଳେ ପର୍ତ୍ତୁଗୀଜ୍‌ମାନେ ଗୋଆକୁ ଶାସନ କଲେ ସେମାନେ କାର୍ନାଭାଲ୍ କୁ 'Porco e brutal', ଯାହାର ଅର୍ଥ ଅସହ୍ୟ ଓ ପାଶବିକ କହିଲେ ! ସତର ଶହ ଶତାବ୍ଦୀର ପ୍ରାରମ୍ଭ ଭାଗରେ କାର୍ନାଭାଲ୍ ପର୍ବକୁ କେବଳ ରାସ୍ତା ଉପରେ କୌତୁକିଆ ଯୁଦ୍ଧଭାବେ ପାଳନ କରାଗଲା । ଏହି ଯୁଦ୍ଧ ପଚାଅଣ୍ଡା, କାଗଜ ଠୁଙ୍ଗାରେ ଅଟା ଓ ଚକ୍‌ଗୁଣ୍ଡ ଫିଙ୍ଗାଫିଙ୍ଗି ଦ୍ୱାରା ଚାଲୁଥିଲା !



## ଦୋସ୍‌ମୋଚେ



ଦୋସ୍‌ମୋଚେ ଏକ ପୁରାତନ ପ୍ରଥା । ସାରା ଏବେ ବି ଲାଦାଖ୍ ଓ ଜାମ୍ମୁ, କାଶ୍ମୀରର ଲୋକମାନେ ପାଳନ କରୁଛନ୍ତି । ପ୍ରତିବର୍ଷ ଫେବୃୟାରୀ ମାସରେ ଲେହର ରାଜପ୍ରାସାଦ ଡ୍ରମ ବାଦ୍ୟର ତାଳେ ତାଳେ ମୁଖରିତ ହୋଇଉଠେ । ଏହି ଦିବସରେ ବିଭିନ୍ନ ଧର୍ମ ସ୍ଥଳୀର ଲାମା ମାନେ ମୁଖା ପରିଧାନ କରନ୍ତି ଓ ନୃତ୍ୟ-ନାଟିକା ପରିବେଷଣ କରନ୍ତି ।

ଏପରି ଏକ ମୁଖ୍ୟ ଉତ୍ସର୍ଗ ହେଉଛି ସୂତାର ଛକି । ଏହା ସବୁ ଟାକ୍‌ଥୋକ୍ ଧର୍ମସ୍ଥଳୀର ଲାମାମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥାଏ । ସେମାନଙ୍କୁ ଜ୍ୟୋତିଷ ଶାସ୍ତ୍ରରେ ପ୍ରବୀଣ ଭାବେ ବିଚାର କରାଯାଏ । ତନ୍ତ୍ର ଓ ସେହିପରି ବିଦ୍ୟା ଜାଣିଥିବା ଏହି ଲାମା ମାନେ ବିଭିନ୍ନ ମନ୍ତ୍ର ଉଚ୍ଚାରଣ କରି ସୂତାର ଛକି ସାହାଯ୍ୟରେ ଅପଶକ୍ତି, ଅତୃପ୍ତ ଆତ୍ମା ଓ ଆସୁରିକ ଶକ୍ତି ମାନଙ୍କୁ କରାୟତ୍ତ କରିପାରନ୍ତି ବୋଲି ବିଶ୍ୱାସ କରାଯାଏ ।

ମୁଖା ଉତ୍ସର୍ଗ ସହିତ ଆଉ ଦଶ ପ୍ରକାରର ବିଭିନ୍ନ

କିସମର ଉତ୍ସର୍ଗ ମଧ୍ୟ ଥାଏ । ତା'ପରେ ସେଗୁଡିକ ସହରର ମୁଖ୍ୟ ରାସ୍ତା ଓ ସହର ମଧ୍ୟଦେଇ ଶୋଭା ଯାତ୍ରାରେ ନିଆଯାଏ । ସଙ୍ଗୀତକାର ଓ ବାଦ୍ୟକାର ମାନଙ୍କର ଏକ ବିରାଟ ଦଳ ଆଗେ ଆଗେ ଚାଲିଥାଏ । ତା'ଙ୍କ ପଛକୁ କଳା ଟୋପି ପିନ୍ଧା ନୃତ୍ୟ ଦଳ, ଲାମା ଶୋଭାଯାତ୍ରାରେ ଚାଲି ଥାଆନ୍ତି ।

ସହରର ଶେଷ ସୀମାରେ, ଶୋଭାଯାତ୍ରା ଅଟକି ଯାଏ ଓ ସବୁ ଉତ୍ସର୍ଗ ଗୁଡିକୁ ପୋତି ନଷ୍ଟ କରିଦିଆଯାଏ ଓ ଆନନ୍ଦ ଉତ୍ସବ ପାଳନ କରାଯାଏ । ଏହା ଫଳରେ ସେମାନେ ବିଭିନ୍ନ ଦୁଷ୍ଟ ଶକ୍ତି ଓ ସାରା ବର୍ଷ ପ୍ରାକୃତିକ ବିପର୍ଯ୍ୟୟରୁ ମୁକ୍ତ ରହିବେ ବୋଲି ବିଶ୍ୱାସ କରନ୍ତି । ଏବେ, ଏଥି ସହିତ ବିଭିନ୍ନ ପ୍ରକାରର ଲୋକନୃତ୍ୟ ପରିବେଷଣ ମଧ୍ୟ ଆରମ୍ଭ କରାଗଲାଣି ।



# ଆସ୍ ୱେଡ୍‌ନେସ୍‌ଡେ



ଏହି ବର୍ଷ ଫେବୃଆରୀ ୨୦ ତାରିଖରେ ଆସ୍ ୱେଡ୍‌ନେସ୍‌ଡେ ପାଳିତ ହେବ । ଏହିଦିନ ଖ୍ରୀଷ୍ଟିୟାନ୍ ମାନେ ତା'ଙ୍କ କପାଳରେ ପାଉଁଶର ଏକ କ୍ରଶ ଚିହ୍ନ ଅଙ୍କନ କରନ୍ତି, ଯାହାର ପ୍ରତୀକାତ୍ମକ ଅର୍ଥ ହେଉଛି ଛୋଟ ହେଉ କି ବଡ ସବୁ ପ୍ରକାରର ପାପ ପାଇଁ ଅନୁତାପ କରିବ । ସମୂହ ପ୍ରାର୍ଥନା ପୂର୍ବରୁ ପାଦ୍ରୀ କିମ୍ବା ଧାର୍ମଯାଜକ ଉପସ୍ଥିତ ସମବେତ ଜନତାଙ୍କର କପାଳରେ ଏହି ଚିହ୍ନ ଲଗାଇ ଦିଅନ୍ତି ।

ଏହି ଦିବସରେ ବ୍ୟବହୃତ ହେଉଥିବା ପାଉଁଶ ତାଳ ବାହୁଙ୍ଗାରୁ ପ୍ରସ୍ତୁତ ହୋଇଥାଏ । ସେଥିରେ ପବିତ୍ର ଜଳ ଓ ଅତର ମିଶ୍ରିତ କରାଯାଇଥାଏ ।

ପ୍ରଭୁ ଯୀଶୁଙ୍କର ଚାଳିଶ ଦିନ ବ୍ୟାପୀ ଉପବାସ, ଯାହା ସେ ଧର୍ମ ପ୍ରଚାର ପୂର୍ବରୁ ଧାରଣ କରିଥିଲେ, ସବୁ ଖ୍ରୀଷ୍ଟ ଧର୍ମାବଲମ୍ବୀଙ୍କୁ ସ୍ମରଣ କରାଇଦିଏ ।

ବିଶ୍ୱାସ କରାଯାଏ ଯେ, ଯୀଶୁଙ୍କୁ ବତିଶ ବର୍ଷ ବୟସ ହେଉଥିବା ବେଳେ ସେ ଜନ୍‌ଙ୍କଦ୍ୱାରା ବାପ୍‌ଟାଇଜଡ୍ ହୋଇଥିଲେ ଓ ତା'ପରେ ଧର୍ମ ପ୍ରଚାର ଓ ଆରୋଗ୍ୟ କର୍ମ ଆରମ୍ଭ କରିବା ପୂର୍ବରୁ ଚାଳିଶ ଦିନ ଉପବାସ କରିଥିଲେ ।

ଏହିପରି ଆସ୍‌ୱେଡ୍‌ନେସ୍‌ଡେ ପବିତ୍ରତା ଓ ପ୍ରାୟଶ୍ଚିତ୍ତର ଏକ ଅଭିନବ ଉପବାସ ଆରମ୍ଭର ସୂଚନା ପ୍ରଦାନ କରେ ।

# ଭାରତ ଗାଥା

ଏକ ମହାନ ସଭ୍ୟତାର ଝଲକ,
ଯୁଗେ ଯୁଗେ ସତ୍ୟ ପାଇଁ ଏକ ମହାର୍ଘ ଅନ୍ୱେଷଣ

## ୨୫. କଥାସରିତ୍ ସାଗରର ଗହନ କଥା



ସଂଦୀପ ଖୁବ୍ ଖୁସି ଥିଲା କାରଣ ତା'ଙ୍କର ବିଦ୍ୟାଳୟର ବାର୍ଷିକ ଉତ୍ସବ ଅବସରରେ ସେମାନଙ୍କ ଦ୍ୱାରା ଅଭିନୀତ ନାଟକ *ଅଭିଜ୍ଞାନ ଶାକୁନ୍ତଳମ୍* ସଫଳ ହୋଇଥିଲା । ସଂଦୀପ ସେହି ନାଟକରେ କଣ୍ୱ ମୁନିଙ୍କ ଚରିତ୍ରରେ ମଧ୍ୟ ଅତି ସୁନ୍ଦର ଅଭିନୟ କରିଥିଲା ।

''ଜେଜେଙ୍କ ଠାରୁ ପ୍ରାଚୀନ କାଳର ମୁନିଋଷିମାନଙ୍କ ସମ୍ପର୍କରେ ମୁଁ ଏତେ କଥା ଜାଣିଯାଇଛି ଯେ, ମୋତେ କଣ୍ୱ ଚରିତ୍ରରେ ଅଭିନୟ କରିବାକୁ ବେଶ୍ ସହଜ ମନେ ହେଲା ।'' ସଂଦୀପ କହିଲା ।

''ଏହା ଖୁବ୍ ଆଶ୍ଚର୍ଯ୍ୟର କଥା ନୁହେଁ କି ? ଶହ ଶହ ବର୍ଷ ତଳେ ଲେଖାଯାଇଥିବା ଏକ ନାଟକକୁ ଏବେ ମଧ୍ୟ ଆମେ ମନଭରି ଉପଭୋଗ କରିପାରୁଛୁ ।'' ସଂଦୀପର ଜଣେ ସାଙ୍ଗ ପାର୍ଥ କହିଲା ।

''ଜେଜେ, ଏ' କ'ଣ ସେହି ବିକ୍ରମାଦିତ୍ୟ, ଯିଏ ମହାକବି କାଳିଦାସଙ୍କର ପୃଷ୍ଠପୋଷକ ଥିଲେ ?'' ଚମେଲୀ ଜାଣିବାକୁ ଚାହିଁଲା ।

''ଇତିହାସରେ ତୁମେ କ'ଣ ଜଣେ ବିକ୍ରମାଦିତ୍ୟଙ୍କ ସମ୍ପର୍କରେ ପଢ଼ିଛ ?'' ଜେଜେ ପ୍ରଶ୍ନ କଲେ । ''ଏହି ଉପାଧି ବହନ କରିଥିବା ଅନେକ ରାଜା ଅଛନ୍ତି । ଏହାର ଅର୍ଥ ''ଆଦିତ୍ୟ ବା ସୂର୍ଯ୍ୟଙ୍କ ସମ ପରାକ୍ରମ'', ସେମାନଙ୍କ ମଧ୍ୟରୁ ଗୁପ୍ତ ବଂଶର



''ଠିକ୍, ମା', ତାହାହିଁ ମୋତେ ଚିନ୍ତା କରିବାକୁ ବାଧ୍ୟ କରୁଛି ଯେ, ପ୍ରଥମ ଶତାବ୍ଦୀରେ ଉଜ୍ଜୟିନୀର ଶାସକ ଭାବେ ବିକ୍ରମାଦିତ୍ୟ ନାମକ ଜଣେ ରାଜା ଥିଲେ । ବିକ୍ରମ ବେତାଳ କାହାଣୀ ମାଳାର ଲେଖକ ଗୁଣାଢ୍ୟ ପ୍ରଥମ ଶତାବ୍ଦୀର ଲୋକ । ସେ ତା'ଙ୍କ ରାଜାଙ୍କର ବୀରତ୍ୱ ଓ ପ୍ରସିଦ୍ଧି ଦ୍ୱାରା ନିଶ୍ଚୟ ଖୁବ୍ ପ୍ରଭାବିତ ହୋଇଥିବେ ।'' ଜେଜେ କହିଲେ ।

''କିନ୍ତୁ, ଜେଜେ, ଆମକୁ ଶିକ୍ଷକ କହିଛନ୍ତି ଯେ ବିକ୍ରମ ଓ ବେତାଳ କାହାଣୀର ଲେଖକ ହେଉଛନ୍ତି ସୋମଦେବ !'' ସଂଦୀପ କହିଲା ।

''ତୁମ ଶିକ୍ଷକ ଭୁଲ୍ ନୁହଁନ୍ତି କିମ୍ବା ମୁଁ ମଧ୍ୟ ଭୁଲ୍ ନୁହେଁ । ସୋମଦେବ ବହୁ ପ୍ରସିଦ୍ଧ ପୁସ୍ତକ 'କଥାସରିତ୍‌ସାଗର'ର ଲେଖକ ଅଟନ୍ତି । ତୁମେ ଯେଉଁ ବିକ୍ରମ ବେତାଳ କଥା କହୁଛ, ତାହା ଏହି ବହିର ଅଂଶବିଶେଷ । କିନ୍ତୁ ସ୍ୱୟଂ *କଥାସରିତ୍‌ସାଗର* ହେଉଛି ଆଉ ଏକ ପୁସ୍ତକ *ବୃହତ୍‌କଥା* ର ଅଂଶ, ଯାହାକି ସୋମଦେବଙ୍କ ସମୟର ହଜାର ବର୍ଷ ପୂର୍ବର ଲେଖକ ଗୁଣାଢ୍ୟଙ୍କ ରଚିତ । ପ୍ରଫେସର ଏପରି କହି ବର୍ଣ୍ଣନା ଆରମ୍ଭ କଲେ ।

ଏବେ ଆମେ ଯେଉଁ ସହରକୁ ପୈଠାନ୍ ନାମରେ ଜାଣୁଛନ୍ତି, ତାହାର ମୂଳ ନାମ ଥିଲା ପ୍ରତିଷ୍ଠାନ । ଦୁଇ ହଜାର ବର୍ଷ ପୂର୍ବେ ଏହା ସାତବାହନ ବଂଶର ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଗୁଣାଢ୍ୟ ସେହି ରାଜାମାନଙ୍କ ମଧ୍ୟରୁ ଜଣଙ୍କର ଦରବାରର ବିଦ୍ୱାନ ଥିଲେ ।

ଏକ ଘଟଣାରେ ରାଜା ସଂସ୍କୃତ ଶିକ୍ଷାଲାଭ କରିବାକୁ ଚାହିଁଲେ । ଗୁଣାଢ୍ୟ ରାଜାଙ୍କୁ ବୁଝାଇଦେଲେ ଯେ, ଏହି ଭାଷାକୁ ଆୟତ୍ତ କରିବା ପାଇଁ କେତେ ବର୍ଷ ଲାଗିବ । କିନ୍ତୁ ଅନ୍ୟ ଜଣେ ବିଦ୍ୱାନ ଦାବି କଲେ ଯେ, ସେ ରାଜାଙ୍କୁ ମାତ୍ର

ଦ୍ୱିତୀୟ ଚନ୍ଦ୍ରଗୁପ୍ତ ହେଉଛନ୍ତି ଜଣେ, ଯାହାଙ୍କର ରାଜଧାନୀ ଥିଲା ଉଜ୍ଜୟିନୀ । ସେ ଚତୁର୍ଥ ଶତାବ୍ଦୀରେ ବିଦ୍ୟମାନ ଥିଲେ । ଅବଶ୍ୟ, ନିଶ୍ଚିତ ଭାବରେ ଆଉ ଜଣେ ବିକ୍ରମାଦିତ୍ୟ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଥିବେ । ତା'ଙ୍କ ରାଜତ୍ୱର ସ୍ମାରକୀ ବହନ କରି ଏକ ନୂତନ ସମ୍ବତ୍ସର ବିକ୍ରମାବ୍ଦର ପ୍ରଚଳନ ହୋଇଥିଲା । ଏହି ସମୟ ଖ୍ରୀଷ୍ଟପୂର୍ବ ୫୮ରେ ଆରମ୍ଭ ହୋଇଥିଲା, କିନ୍ତୁ ଇତିହାସରେ ଏହି ବିକ୍ରମାଦିତ୍ୟଙ୍କ ସମ୍ପର୍କରେ କିଛି ସୂଚନା ନାହିଁ । କାଳିଦାସ ଏହି ବିକ୍ରମାଦିତ୍ୟଙ୍କର ଦରବାରର ରାଜକବି ଥିବେ । କିମ୍ବା କାଳିଦାସ ଚନ୍ଦ୍ରଗୁପ୍ତ ଦ୍ୱିତୀୟଙ୍କର ଦରବାରର କବି ହୋଇଥିବେ ।

''କିନ୍ତୁ ପ୍ରସିଦ୍ଧ ବିକ୍ରମ ବେତାଳ କାହାଣୀ ମାଳାରେ ପୁଣି ଜଣେ ବିକ୍ରମ ଅଛନ୍ତି ?'' ଚମେଲୀ ପୁଣି ଥରେ ପଚାରିଲା ।



ଛଅ ମାସରେ ସଂସ୍କୃତ ଶିଖାଇ ଦେଇ ପାରିବେ ।

ଯଦି ତୁମେ ସେପରି କରି ପାରିବ, ତେବେ ମୁଁ ସଂସ୍କୃତରେ ଲେଖିବା ତ୍ୟାଗ କରିଦେବି ।'' ଗୁଣାଢ୍ୟ ଏକ ଜିଦ୍‌ରେ କହି ପକାଇଲେ ।

ବାସ୍ତବରେ ରାଜା ଥିଲେ ଜଣେ ପଠନପ୍ରିୟ ଯୁବକ । ଛଅ ମାସ ପରେ ପ୍ରମାଣିତ ହୋଇଗଲା ଯେ ସେ ଖୁବ୍ ସୁନ୍ଦର ଭାବେ ସଂସ୍କୃତ ଭାଷାରେ ପାରଦର୍ଶିତା ହାସଲ କରିଛନ୍ତି । ଗୁଣାଢ୍ୟ କେବଳ ସଂସ୍କୃତରେ ଲେଖାଲେଖି ବନ୍ଦ କଲେ ନାହିଁ, ତା' ସହିତ ନଗରୀ ପରିତ୍ୟାଗ କରିବାକୁ ନିଷ୍ପତ୍ତି ନେଲେ ।

ରାଜା ତାଙ୍କୁ ପ୍ରବୋଧନା ଦେଇ କହିଲେ, ''ବନ୍ଧୁବର ! ଯଦି ତୁମେ ରାଜ୍ୟରେ ଅନୁପସ୍ଥିତ ରହିବ, ତେବେ ଏହି ସମୟର ସଦୁପଯୋଗ ହେବା ଉଚିତ । ମୁଁ ତୁମକୁ ପ୍ରସ୍ତାବ ଦେଉଛି ଯେ ତୁମେ ଲୋକ ମୁଖରେ ପ୍ରଚଳିତ କାହାଣୀ ସବୁ ସଂଗ୍ରହ କର । ତୁମେ ତା'ହାକୁ ସାଧାରଣ ମନୁଷ୍ୟର ଭାଷାରେ ଲେଖି ପାରିବ ।''

ଗୁଣାଢ୍ୟ ଏହି ପ୍ରସ୍ତାବ ସ୍ୱୀକାର କଲେ । ସେ ହିମାଳୟଠାରୁ କନ୍ୟାକୁମାରୀ ଯାଏଁ ପରିଭ୍ରମଣ କଲେ ଓ ବହୁ ଲୋକଙ୍କୁ ଭେଟିଲେ । ହଜାର ହଜାର କାହାଣୀ ଶୁଣିଲେ, ସେ ସେସବୁ କାହାଣୀକୁ ପୃଥକ ଭାବରେ ସଜାଇ ଲେଖିଲେ । ବର୍ଷ ପରେ ବର୍ଷ ବିତିଗଲା । ସେ ଗୋଟିଏ ଯାନରେ ତାଳପତ୍ର ପୋଥି ବୋଝେଇ କରି ପ୍ରତିଷ୍ଠାନ ନଗରୀକୁ ଫେରି ଆସିଲେ । ସେ ରାଜାଙ୍କ ଠାରୁ ଏକ ବିରାଟ ସମ୍ବର୍ଦ୍ଧନା ଆଶା କରୁଥିଲେ । କିନ୍ତୁ ଯେକୌଣସି କାରଣରୁ ହେଉ ରାଜା ବିଶେଷ ଆଗ୍ରହ ପ୍ରକାଶ କଲେ ନାହିଁ । ଏହା ଦ୍ୱାରା ବିଶେଷ ମର୍ମାହତ ହୋଇ ଗୁଣାଢ୍ୟ ତାଳପତ୍ର ପାଣ୍ଡୁଲିପିକୁ ଏକ ପାହାଡ ଉପରକୁ ଉଠାଇ ନେଲେ । ଏହା ଥିଲା ମେଘଯୁକ୍ତ ଅପରାହ୍ନ । ସେ ନିଆଁ ଜଳାଇଲେ, ନିଆଁର ଆଲୋକରେ, ସେ ପ୍ରଥମେ ତାଙ୍କର ସଂଗ୍ରହିକାର ପ୍ରଥମ ଅଧ୍ୟାୟ ବାହାର କଲେ । ଏହା ପ୍ରକୃତି

ସମ୍ବନ୍ଧରେ ରଚନା କରାଯାଇଥିଲା । ତାହା ଶୁଣି ମେଘ ମାନେ ଚଳ ଚଞ୍ଚଳ ହୋଇ ଉଠିଲେ । ମାତ୍ର ସେ ଯେତେବେଳେ ସେହି ପୃଷ୍ଠା ଗୁଡିକୁ ଅଗ୍ନିକୁ ନିକ୍ଷେପ କଲେ, ପବନର ବେଗ ଦ୍ରୁତ ହୋଇଗଲା ଓ ଆକାଶରୁ ବଜ୍ରନାଦ ଶୁଭିଲା ।

ତା'ପରେ ସେ ଉଚ୍ଚସ୍ୱରରେ ପଶୁ, ପକ୍ଷୀ ଓ ତରୁଲତାଙ୍କ ସମ୍ପର୍କରେ ଲିଖିତ ଥିବା କାହାଣୀ ଭାଗଟି ପାଠ କଲେ । ତା'ଙ୍କ କାହାଣୀ ଶୁଣି ଅନେକ ପଶୁ ତା'ଙ୍କ ଚର୍ତୁଃପାର୍ଶ୍ୱକୁ ଘେରି ଗଲେ । ବୃକ୍ଷ ଡାଳରେ ପକ୍ଷୀମାନେ ଆମୋଦିତ ହେଲେ । ତା'ପରେ ସେ ଯେତେବେଳେ ସେହି ଅଂଶକୁ ଅଗ୍ନିରେ ନିକ୍ଷେପ କଲେ, ପଶୁମାନେ ଗର୍ଜନ କଲେ । ପକ୍ଷୀମାନେ ଡେଣା ଝାଡି ପ୍ରତିବାଦ ଜଣାଇଲେ । ବୃକ୍ଷରାଜି ତଳକୁ ନଇଁଆସି ନିଆଁ ଲିଭାଇବାକୁ ପ୍ରୟାସ କଲେ, ମାତ୍ର ସବୁ ବୃଥା ହେଲା ।

ଏପରି ଘଟଣାମାନ ସେତେବେଳ ଯାଏଁ ଘଟି ଚାଲିଲା, ଯେତେବେଳେ କେହି ଜଣେ ରାଜାଙ୍କ ନିକଟକୁ ଯାଇ ଏହି ଘଟଣା ସମ୍ପର୍କରେ ଖବର ଦେଲା । ରାଜା ନିଜେ ଘଟଣା ସ୍ଥଳକୁ ଆସିଲେ ଓ ବିଦ୍ୱାନଙ୍କୁ କୁଣ୍ଢାଇ ପକାଇ ନିଆଁ ଲିଭାଇ ଦେବାକୁ ଆଦେଶ ଦେଲେ । କିନ୍ତୁ ସେତେବେଳକୁ ସମଗ୍ର ସଂଗ୍ରହିକାର ପାଞ୍ଚୋଟି ଅଧ୍ୟାୟରୁ ଚାରୋଟି ଅଧ୍ୟାୟ ଭସ୍ମୀଭୂତ ହୋଇ ସାରିଥିଲା । ଏକାଦଶ ଶତାବ୍ଦୀରେ କାଶ୍ମୀର ରାଜା ଅନନ୍ତଙ୍କ ରାଜଦରବାରର ବିଦ୍ୱାନ ସୋମଦେବ ତା'ହାକୁ ସଂସ୍କୃତରେ ଅନୁବାଦ କଲେ । ରାଜା ଓ ରାଣୀ ସେମାନଙ୍କ ବୃଦ୍ଧାବସ୍ଥାରେ ଖୁବ୍ ଦୁଃଖରେ ସମୟ ବିତାଉଥିଲେ, କାରଣ ସେମାନଙ୍କ ପୁତ୍ରର ଆଚାର ବ୍ୟବହାର ଉତ୍ତମ ନ ଥିଲା । ସୋମଦେବଙ୍କ କାହାଣୀରୁ ସେମାନଙ୍କୁ ଅନେକ ସାନ୍ତ୍ୱନା ମିଳୁଥିଲା ।

"ବାଃ, ଏହି ସବୁ କାହାଣୀ ପଛରେ ପୁଣି କେତେ ଗହନ କଥା ଛପି ରହିଛି !" ଚମେଲୀ ବିସ୍ମିତ ହୋଇ ମନ୍ତବ୍ୟ ଦେଲା ଓ ଅନ୍ୟମାନେ ତା'ର ଭାବନାକୁ ସମର୍ଥନ ଜଣାଇଲେ ।

-ବିଶ୍ୱାବସୁ





# ବିଘ୍ନେଶ୍ୱର

ଦେବତା ଓ ରାକ୍ଷସ ମିଳିତ ଭାବେ କ୍ଷୀରସାଗର ମନ୍ଥନ କଲେ । ତାହା ଦ୍ୱାରା ଅମୃତ ଉଦ୍‌ଭବ ହେଲା । ସେ ଅମୃତ ପାନ କଲେ, ଅମର ହୋଇ ଅସୁରମାନେ ସୃଷ୍ଟିର ସର୍ବନାଶ କରିବେ ବୋଲି ବିଷ୍ଣୁ ମୋହିନୀ ରୂପ ଧାରଣ କରି ଅମୃତ ବଣ୍ଟନର ଦାୟିତ୍ୱ ଗ୍ରହଣ କଲେ ଏବଂ ଦେବତାମାନଙ୍କୁ ଅମୃତ ପରିବେଷଣ କଲେ ।

ବିଷ୍ଣୁଙ୍କର ମାୟାରୂପ ଭେଦକରି ତାଙ୍କୁ ଚିହ୍ନିବା ରାକ୍ଷସମାନଙ୍କ ପକ୍ଷରେ ସମ୍ଭବପର ହେଲା ନାହିଁ । ରାକ୍ଷସମାନଙ୍କୁ ଅମୃତରୁ ବଞ୍ଚିତ କରି ନଥିଲେ ପୃଥିବୀରେ ଧର୍ମ, ସତ୍ୟ ଇତ୍ୟାଦି ତିଷ୍ଠି ରହି ନଥାନ୍ତା । ବିଷ୍ଣୁ ସେଥିପାଇଁ ନିଜ ମୋହିନୀ ରୂପ ଦ୍ୱାରା ରାକ୍ଷସମାନଙ୍କୁ ଅଭିଭୂତ କରି ଦେବତାମାନଙ୍କୁ ଅମୃତ ପରଶି ଦେଲେ । ରାକ୍ଷସମାନେ ସେକଥା ବୁଝିଲାବେଳକୁ ବିଳମ୍ବ ହେଲାଣି ।

ଫଳରେ ଦେବତାମାନେ ଅମର ହୋଇ ଗଲେ । ଅମୃତରୁ ବଞ୍ଚିତ ହୋଇ ଅସୁରମାନେ ବେଶ୍ କ୍ଷୁବ୍ଧ ହେଲେ । ତାରକାସୁର ନାମକ ଅସୁର ଦେବତାମାନଙ୍କ ଉପରେ ପ୍ରତିଶୋଧ ନେବା ମାନସରେ କଠୋର ତପସ୍ୟା କଲା ଏବଂ ବ୍ରହ୍ମାଙ୍କୁ ଶେଷ କରି ତା'ର ଯେପରି କଦାପି ମୃତ୍ୟୁ ହେବ ନାହିଁ, ଏହି ବର ମାଗିଲା ।

କିନ୍ତୁ ବ୍ରହ୍ମା ତାକୁ କହିଲେ, ''ମୃତ୍ୟୁ ହେବ ନାହିଁ, ଏଭଳି ବର ଦେବା ସମ୍ଭବ ନୁହେଁ । ଅନ୍ୟ କୌଣସି ବର ମାଗ ।''

ତାରକାସୁର ଚିନ୍ତା କରି ଏହି ବର ମାଗିଲା କି ଯଦି ତା'ର ମୃତ୍ୟୁ ହେବ, ତେବେ ଶିବଙ୍କ ପୁତ୍ର ହାତ ରେ ହିଁ ହେବ ।'' ବ୍ରହ୍ମା ତଥାସ୍ତୁ କହିଲେ ।

ସେତେବେଳେ ଶିବଙ୍କ ପତ୍ନୀ ସତୀ ଦକ୍ଷଯଜ୍ଞ ବେଳେ ପ୍ରାଣ ହାରିଥାନ୍ତି । ଶିବ ଦୁଃଖରେ ଉନ୍ମତ୍ତ ପ୍ରାୟ ଏଣେ ତେଣେ ବହୁକାଳ ବୁଲି ବୁଲି ଅବଶେଷରେ ଗୋଟାଏ ସ୍ଥାନରେ ବସିପଡ଼ି ଧ୍ୟାନମଗ୍ନ ହୋଇ ଯାଇଥାନ୍ତି ।

ତାରକାସୁର ଯଥାଶୀଘ୍ର ସମସ୍ତ ଅମୃତକୁ ଏକତ୍ର କଲା ଏବଂ ତିନିଲୋକ ବ୍ୟାପି ଯୁଦ୍ଧ କରି



ଦେବତାମାନଙ୍କୁ ନାକେଦମ୍ କରିବା ସକାଶେ ସମସ୍ତଙ୍କୁ ପ୍ରବର୍ତ୍ତାଇବାକୁ ଲାଗିଲା ।

ତାରକାସୁରର ଏ ଆୟୋଜନ କଥା ଇନ୍ଦ୍ରଙ୍କ କାନରେ ପଡିଲା । ସେ ଦେବଗଣଙ୍କୁ ଧରି ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ ଓ ଆସନ୍ନ ବିପଦ କଥା କହିଲେ ।

''ଦେବଗଣ ! ତାରକାସୁର ମୋଠାରୁ ଏହି ମର୍ମରେ ଅମର ବର ଲାଭ କରିଛି କି କେବଳମାତ୍ର ଶିବଙ୍କ ପୁତ୍ର ହାତରେହିଁ ତା'ର ମୃତ୍ୟୁ ହୋଇ ପାରିବ ।'' ବ୍ରହ୍ମା ଜଣାଇଲେ । ସେ ଦିଗରେ କ'ଣ କରାଯାଇପାରେ ସେ ପରାମର୍ଶ ସକାଶେ ଦେବଗଣଙ୍କୁ ଧରି ସେ ବିଷ୍ଣୁଙ୍କ ପାଖରେ ଯାଇ ପହଞ୍ଚିଲେ ।

ବିଷ୍ଣୁଙ୍କ ନିର୍ଦ୍ଦେଶ କ୍ରମେ ଦେବର୍ଷି ନାରଦ ଯାଇ ଶିବଙ୍କୁ ଭେଟିଲେ । ତାଙ୍କୁ ପ୍ରଣାମ କରି ସେ କହିଲେ କି ତାଙ୍କ ସେବା ପରିଚର୍ଯ୍ୟା ନିମନ୍ତେ ହିମବନ୍ତ-କନ୍ୟା ପାର୍ବତୀଙ୍କୁ ଅନୁମତି ମିଳୁ । ଶିବ ନୀରବ ରହିବାର ଦେଖି ତାହା ସମ୍ମତିର ଲକ୍ଷଣ ବୋଲି ନାରଦ ବୁଝିଲେ । ପାର୍ବତୀ ଯାଇ ଶିବଙ୍କ ପରିଚର୍ଯ୍ୟାରେ ମନୋନିବେଶ କଲେ ।

ଶିଶୁକାଳରୁହିଁ ନାରଦଙ୍କ ମୁହଁରୁ ଦେବୀ ପାର୍ବତୀ ଶିବଙ୍କ ନାନା ଗୁଣର କାହାଣୀ ଶୁଣିଥିଲେ । ଶିବଙ୍କ ସେବାର ସୁଯୋଗ ପାଇ ତାଙ୍କ ଆନନ୍ଦ କହିଲେ ନ ସରେ । ସେ ମନ ପ୍ରାଣ ଢାଳି ଶିବ-ପରିଚର୍ଯ୍ୟା କରିବାକୁ ଲାଗିଲେ ।

ପ୍ରତ୍ୟୁଷରୁ ଯାଇ ପାର୍ବତୀ ଶିବଙ୍କ ଧ୍ୟାନ କ୍ଷେତ୍ର ପ୍ରସ୍ତୁତ କରୁଥିଲେ । ମୟୁର ପଙ୍ଖର ମାର୍ଜନୀ ଦ୍ୱାରା ସେ ସ୍ଥାନ ପରିଷ୍କାର କରି ସେଠାରେ ସୁଗନ୍ଧ ନୀର ସିଞ୍ଚନ କରୁଥିଲେ । ନାନା ରଙ୍ଗର ମୁରୁଜ ଦ୍ୱାରା ସ୍ଥାନକୁ ସୁଶୋଭିତ କରୁଥିଲେ । ସୁବର୍ଣ୍ଣ ପାତ୍ରରେ ଫଳ ଫୁଲ ତଥା ବେଲପତ୍ର ସଜ୍ଜିତ କରି ରଖୁଥିଲେ । ଶୁଭ୍ର କୁମୁଦରେ ସ୍ଥାନଟିକୁ ବେଷ୍ଟନ କରୁଥିଲେ । ହିମଶିଖରରୁ କ୍ଷରିତ ସ୍ୱଚ୍ଛ ନୀର କମଣ୍ଡଳୁରେ ପୁରାଇ ରଖୁଥିଲେ ।

ତା'ପରେ ଶିବଙ୍କ ମନୋରଞ୍ଜନ ନିମନ୍ତେ ପାର୍ବତୀ ମଧୁର ଯନ୍ତ୍ରସଙ୍ଗୀତର ଝଙ୍କାର ତୋଳୁଥିଲେ । ଶିବଙ୍କ ପ୍ରିୟ ଭୈରବୀ, ମୁଖାରୀ, କେଦାର ଓ ଶିବରଞ୍ଜନୀ ଇତ୍ୟାଦି ରାଗ ସେ ଶୁଣାଉଥିଲେ । ଶିବଙ୍କ ସମୀପରେ ସମୟ ବିତାଇବାରେ ତାଙ୍କର ଥିଲା ପରମ ଆନନ୍ଦ ।

ଶିବଜୀ କେତେବେଳେ ଧ୍ୟାନରୁ ବିରତ ହୋଇ ଚକ୍ଷୁ ଉନ୍ମୀଳନ କରି ତାଙ୍କ ଆଡ଼କୁ ଦୃଷ୍ଟିପାତ କରିବେ, ପାର୍ବତୀ ସେହି ମୁହୂର୍ତ୍ତକୁ ଅପେକ୍ଷା କରିଥାନ୍ତି । କିନ୍ତୁ ଶିବ ତାଙ୍କ ପରିପାର୍ଶ୍ୱ ସମ୍ପର୍କରେ ସଚେତନ ନଥାନ୍ତି । ସେ ସର୍ବଦା ଗଭୀର ଧ୍ୟାନରେ ନିମଗ୍ନ ରହିଥାନ୍ତି ।

ଏଣେ ଦେବ୍‌ତାମାନେ ଚାହୁଁଥାନ୍ତି କି ଶିବଙ୍କ ସହ ପାର୍ବତୀଙ୍କର ସହଳ ସହଳ ବିବାହ ହୋଇଯାଉ । ତାହାହେଲେ ସିନା ଶିବଙ୍କର ସନ୍ତାନ ହେବ ଏବଂ ସେ ସନ୍ତାନ ତୁରନ୍ତ ତାରକାସୁରକୁ ବଧ କରିବ !

କିନ୍ତୁ ଶିବ ପାର୍ବତୀଙ୍କ ପ୍ରତି ଅନୁରାଗ ଅନୁଭବ କରିବା ତ ଦୂରର କଥା, ପାର୍ବତୀଙ୍କ ଆଡ଼କୁ ଦୃଷ୍ଟିପାତ ମଧ କରିବାର ଦେଖାଗଲା ନାହିଁ । ଶିବଙ୍କ ହୃଦୟରେ ପାର୍ବତୀଙ୍କ ପ୍ରତି ଅନୁରାଗ ସଞ୍ଚାର କରିବା ନିମନ୍ତେ ଦେବରାଜ ଇନ୍ଦ୍ର ଗୋଟାଏ ଯୋଜନା କଲେ । ସେ ପ୍ରେମର ଦେବତା କାମଦେବଙ୍କୁ ନିମନ୍ତ୍ରଣ କରି ଆଣି ଶିବପୁରୀକୁ ପଠାଇଲେ ।

କାମଦେବ ତାଙ୍କ ପତ୍ନୀ ରତି ଦେବୀଙ୍କୁ ସାଥିରେ ନେଇ ରଥାରୋହଣ କଲେ । ତାଙ୍କ ରଥର ସାରଥୀ ରୂପେ ଗଲେ ଋତୁରାଜ ବସନ୍ତ ।

ସେମାନଙ୍କ ରଥ ହିମାଳୟ ଉପରେ ଅବତରଣ କରିବାକୁ ଆରମ୍ଭ କରନ୍ତେ ସେ ଅଞ୍ଚଳ ବ୍ୟାପି ବସନ୍ତର ଆବିର୍ଭାବ ଘଟିଲା । ବୃକ୍ଷଲତା ନୂତନ ପତ୍ର ଓ ପୁଷ୍ପ ସମ୍ଭାରରେ ଉଛୁଳି ଉଠିଲେ । କୋକିଳର ସଙ୍ଗୀତରେ ଚତୁର୍ଦ୍ଦିଗ ପୁଲକିତ ହେଲା । ଭ୍ରମରମାନେ ଗୁଣୁଗୁଣୁ କରିବାକୁ ଲାଗିଲେ । ମଳୟ କହିବାକୁ ଲାଗିଲେ ।

ଏଣେ ଅଦୂରରେ ଠିଆ ହୋଇ କାମଦେବ ଶିବଙ୍କ ଉପରେ ମନୋନିବେଶ କଲେ । କିଛି ସମୟ ବିତିଗଲା । ଆକସ୍ମାତ୍ ଋତୁ-ପରିବର୍ତ୍ତନ ଶିବ ଅନୁଭବ କରି ପାରିଲେ । ତାଙ୍କ ହାତରୁ ଜପମାଳ ଖସି ପଡ଼ିଲା । ସେ ଆଖି ଖୋଲି ମାଳଟି ଆଡ଼କୁ ଦୃଷ୍ଟିପାତ କଲାବେଳେ ପାର୍ବତୀ ମାଳଟି ଗୋଟାଇ ନେଇ ତାଙ୍କୁ ପ୍ରଦାନ କଲେ । ପାର୍ବତୀଙ୍କୁ ଦେଖି ଶିବ ପରିତୋଷ ଲାଭ କଲେ । କିନ୍ତୁ ସେତିକିବେଳେ



ତାଙ୍କ ହୃଦୟରେ ଅନୁରାଗ ସଞ୍ଚାର କରିବା ଉଦ୍ଦେଶ୍ୟରେ କାମଦେବ ପୁଷ୍ପବାଣ ପ୍ରୟୋଗ କରନ୍ତେ ତାହାର ପ୍ରତିକ୍ରିୟାରେ ସେ ଚମକି ପଡ଼ିଲେ । ନିଜ ହୃଦୟରେ ଅସ୍ୱାଭାବିକ ଅନୁଭୂତି ହେବାରୁ ସେ ତା'ର କାରଣ ଖୋଜିଲେ । କାରଣ ଖୋଜିବା ମାତ୍ରେ ତାଙ୍କ କପାଳରେ ନିବିଷ୍ଟ ତୃତୀୟ ନୟନ ଖୋଲିଗଲା ।

ସେ କାମଦେବଙ୍କୁ ଦେଖି ପାରିଲେ । କାମଦେବ ତାଙ୍କ ହୃଦୟରେ ଅନୁରାଗ ସଞ୍ଚାର କରିବାର ଚେଷ୍ଟା କରି ତାଙ୍କ ତପସ୍ୟାରେ ବିଘ୍ନ ଘଟାଇଛନ୍ତି ବୁଝିପାରି ସେ ବିରକ୍ତ ହେଲେ । ତାଙ୍କ ବିରକ୍ତି ତତ୍‌କ୍ଷଣାତ୍ ପ୍ରଜ୍ୱଳିତ ଅଗ୍ନି ରୂପେ ନିର୍ଗତ ହୋଇ କାମଦେବଙ୍କ ଉପରେ ପଡ଼ିଲା ଓ ତାଙ୍କୁ ଭସ୍ମ କରିଦେଲା ।

ଶିବ ଉଠିପଡ଼ି କୈଳାଶ ଶିଖରକୁ ଚାଲିଗଲେ । ରତିଦେବୀ ପତିଙ୍କ ଭସ୍ମ ଉପରେ ମୂର୍ଚ୍ଛା ଗଲେ । ମୂର୍ଚ୍ଛା ଭଙ୍ଗ ହେବା ପରେ ସେ କାମଦେବଙ୍କ



ଦୁର୍ଭାଗ୍ୟର ହେତୁ ଯେଉଁ ଇନ୍ଦ୍ର, ତାଙ୍କୁ ଅଭିଶାପ ଦେବାକୁ ଉଦ୍ୟତ ହେଲେ । କିନ୍ତୁ ବ୍ରହ୍ମାଙ୍କ ସମେତ ଦେବଗଣ ସେଠାରେ ପହଞ୍ଚି ତାଙ୍କୁ ଆଶ୍ୱାସନା ଦେଲେ ଓ ଜଣାଇଲେ କି ଶିବ ଓ ପାର୍ବତୀଙ୍କ ବିବାହ ଅନୁଷ୍ଠିତ ହୋଇଗଲେ କାମଦେବ ତାଙ୍କ ଦେହ ଫେରି ପାଇବେ । ରତିଦେବୀ ସେହି ଭସ୍ମ ପାଖରେ ବସି ରହିଲେ ।

ତାଙ୍କ ଆରାଧ୍ୟ ଦେବତା ଶିବ ଏପରି ବିରକ୍ତ ହୋଇ ଚାଲିଗଲେ ବୋଲି ପାର୍ବତୀ ଭୀଷଣ ଦୁଃଖ ପାଇଲେ । ସେ ନିଜ ପିତାମାତାଙ୍କ ଉଆସକୁ ନ ଫେରି ହିମାଳୟର ଏକ ନିର୍ଜନ ପ୍ରାନ୍ତରେ ତପସ୍ୟା କରିବାକୁ ଲାଗିଲେ । ଅନ୍ନଜଳ ସ୍ପର୍ଶ ନ କରି ସେ ହେଲେ କ୍ଷୀଣ-ତନୁ । ତାଙ୍କ ଜନନୀ ମେନକା ତାଙ୍କୁ ଯେତେ ବୁଝାଇଲେ ମଧ୍ୟ ସେ ଶୁଣିଲେ ନାହିଁ । ଜୟା ଓ ବିଜୟା ନାମକ ଦୁଇ ସଖି ପାର୍ବତୀଙ୍କ ସାଥେ ସାଥେ ରହି ତାଙ୍କ ଯତ୍ନ ନେଲେ । ରାଜା ହିମବନ୍ତ ଓ ରାଣୀ ମେନକାଙ୍କୁ ସେମାନେ ପାର୍ବତୀଙ୍କ କଥା ସବୁବେଳେ ଜଣାଉଥାନ୍ତି ।

ଶିବ ସିନା କାମଦେବଙ୍କୁ ଭସ୍ମ କରି ଚାଲିଗଲେ, କିନ୍ତୁ କାମଦେବଙ୍କ ପୁଷ୍ପବାଣର ପ୍ରଭାବ ବ୍ୟର୍ଥ ହେଲା ନାହିଁ । ସେ କ୍ରମେ ପାର୍ବତୀଙ୍କ ପ୍ରତି ଗଭୀର ଅନୁରାଗ ଅନୁଭବ କଲେ । ସେ ଛଦ୍ମବେଶରେ ଯାଇ ପାର୍ବତୀଙ୍କୁ ପରୀକ୍ଷା କଲେ । ପାର୍ବତୀଙ୍କ ଉପରେ ସନ୍ତୁଷ୍ଟ ହୋଇ ସେ ତାଙ୍କୁ ବିବାହ କରିବାକୁ ସ୍ଥିର କଲେ ଏବଂ ସପ୍ତର୍ଷିଙ୍କୁ ସେ ପ୍ରସ୍ତାବ ଦେଇ ହିମବନ୍ତଙ୍କ ନିକଟକୁ ପଠାଇଲେ । ରାଜା ହିମବନ୍ତ ଓ ରାଣୀ ମେନକା ଅତ୍ୟନ୍ତ ଆନନ୍ଦିତ ହେଲେ । ବିବାହର ତିଥି ସ୍ଥିର କରିଦେଲେ ସପ୍ତର୍ଷି ।

ଶିବଗଣ ହୃଷ୍ଟ ଚିତ୍ତରେ ଆଗେ ଆଗେ ଚାଲିଲେ । ସେମାନଙ୍କୁ ଅନୁସରଣ କରି ଚାଲିଲେ ଶିବ । ହିମାଳୟ ଶିଖରରେ ପ୍ରସ୍ତୁତ ବିବାହ ମଣ୍ଡପରେ ସେ ଯାଇ ପହଞ୍ଚିଲେ । ସେଠାରେ ବ୍ରହ୍ମା ବିଷ୍ଣୁଙ୍କ ସମେତ ଦେବଗଣ ଓ ବହୁ ଋଷିଙ୍କର ସମାବେଶ ହୋଇଥାଏ । ଋଷି-ପତ୍ନୀ ଅରୁନ୍ଧତୀ ଶିବଙ୍କ କପାଳରେ ତିଳକ ଲଗାଇ ତାଙ୍କୁ ବର ରୂପରେ ସଜାଇଲେ । ଶିବ ଦେଖାଗଲେ ଅତୀବ ସୁନ୍ଦର । ସେହି ଦିନରୁ ତାଙ୍କୁ ସୁନ୍ଦରେଶ୍ୱର ବୋଲି କୁହା ହେଲା ।

ଅଳଙ୍କାର ପରିହିତା ପାର୍ବତୀ ବିଦ୍ୟୁତ୍‌ଲତା ଭଳି ଦିଶୁଥାନ୍ତି । ବଧୂ ପାର୍ବତୀଙ୍କୁ ବେଦୀକୁ ବାଟ କଢ଼ାଇ ନେଇଗଲେ ସ୍ୱୟଂ ବିଷ୍ଣୁ । ସେ ଶିବଙ୍କୁ କହିଲେ: ‘‘ଆପଣ ସୁନ୍ଦରେଶ୍ୱର, ମୋର ଏହି ଭଗ୍ନୀ ହେଲେ ମୀନାକ୍ଷୀ ।’’ (ମର୍ତ୍ତ୍ୟରେ ମଦୁରାଇ ନଗରୀରେ ଶିବ-ପାର୍ବତୀ ସୁନ୍ଦରେଶ୍ୱର ଓ ମୀନାକ୍ଷୀ ରୂପେ ପୂଜା ପାଆନ୍ତି ।) ମହା ଆଡ଼ମ୍ବରରେ ଶିବ ପାର୍ବତୀଙ୍କ ବିବାହ ସମ୍ପନ୍ନ ହେଲା ।



ହିମାଳୟର ଯେଉଁ ଅଞ୍ଚଳରେ ଶିବପାର୍ବତୀ ତପସ୍ୟା କରୁଥିଲେ, ସେଠାରେ ଦେବ-ଶିଳ୍ପୀ ବିଶ୍ୱକର୍ମା ଏକ ମନୋରମ ପ୍ରାସାଦ ନିର୍ମାଣ କରିଦେଲେ ।

ମଙ୍ଗଳବାଦ୍ୟ ସହିତ ଶିବ-ପାର୍ବତୀ ସେହି ନବନିର୍ମିତ ପ୍ରାସାଦ ଉଦ୍ଦେଶ୍ୟରେ ଚାଲିଲେ । ବାଟରେ କାମଦେବଙ୍କ ଭସ୍ମରାଶି ସେମାନଙ୍କର ଦୃଷ୍ଟି ଗୋଚର ହେଲା । ସେ ଭସ୍ମରାଶି ପାଖରେ ମନଦୁଃଖରେ ବସି ରହିଥିଲେ ରତିଦେବୀ ।

ଶିବ ରତିଦେବୀଙ୍କ ପାଖକୁ ଯାଇ ତାଙ୍କ ଶୀରରେ କର ରଖି ତାଙ୍କୁ ଆଶୀର୍ବାଦ କଲେ । ପୁନର୍ବାର ତାଙ୍କ ତୃତୀୟ ନୟନ ଖୋଲିଗଲା । ଏଥର ସେଥିରୁ ନିର୍ଗତ ହେଲା ସୁକୋମଳ ଶାନ୍ତ ଦୃଷ୍ଟି । ଚାହୁଁ ଚାହୁଁ ଭସ୍ମସ୍ତୁପ ଉଭେଇଗଲା । ସେଠାରେ ଆବିର୍ଭୂତ ହେଲେ କାମଦେବ ।

ଶିବ ରତିଦେବୀଙ୍କୁ କହିଲେ, ''ଦେବୀ ! ତୁମ ପତି ବର୍ତ୍ତମାନ ନିଜ ରୂପ ଫେରି ପାଇଛନ୍ତି । ମୁଁ ତାଙ୍କୁ ଦେଖିପାରିଲି ବୋଲି ସେ ଭସ୍ମ ହେଲେ । ମୁଁ ଏହି ବର ଦେଉଛି, ଭିବଷ୍ୟତରେ ତମ ଦୁହିଁଙ୍କୁ କେହି ଦେଖି ପାରିବେ ନାହିଁ । କେବଳ ତମେ ପରସ୍ପର ନିଜକୁ ଦେଖି ପାରିବ । ଅବଶ୍ୟ ଯଦି କାହାକୁ ତମେ ଦେଖା ଦେବାକୁ ଚାହିଁବ, ତେବେ ଦେଖା ଦେଇ ପାରିବ । ଏହା ଫଳରେ ତମେ ଅଦୃଶ୍ୟ ଭାବରେ ରହି ନିଜ ଶକ୍ତି ସର୍ବତ୍ର ପ୍ରୟୋଗ କରିପାରିବ ।''

ଏହାପରେ ଶିବ ପାର୍ବତୀ ବିଶ୍ୱକର୍ମା-ନିର୍ମିତ ସୁରମ୍ୟ ପ୍ରାସାଦରେ ପ୍ରବେଶ କଲେ । ପ୍ରାସାଦର ଅନୁପମ ଭାସ୍କର୍ଯ୍ୟ ଓ କାରୁକାର୍ଯ୍ୟ ଦେଖି ସମସ୍ତେ ମୁଗ୍ଧ ହେଲେ ।

ବିଶ୍ୱକର୍ମା ଖଣ୍ଡିଏ ପର୍ଦ୍ଦା ଆଗରେ ଠିଆ ହୋଇ ଶିବ ପାର୍ବତୀଙ୍କୁ କହିଲେ, ''ଆଜ୍ଞା, ପର୍ଦ୍ଦା ଆଢୁଆଳରେ ରହିଛି ଏକ ଚିତ୍ରପଟ । ସେଥିରେ ଦୁଇଟି ସୁନ୍ଦର ପ୍ରତିମୂର୍ତ୍ତି ଦେଖିବାକୁ ପାଇବେ । ତାହାର ବିଶେଷତ୍ୱ ହେଲା, ଦୁଇ ପ୍ରତିମୂର୍ତ୍ତି ଭିତରୁ କେଉଁଟି ଅଧିକ ସୁନ୍ଦର, ସେକଥା ଆମଭଳି ବ୍ୟକ୍ତିମାନେ କହିପାରିବା ସମ୍ଭବପର ନୁହେଁ । ଆମର ବିଶ୍ୱାସ, ଆପଣ ଦୁଇଜଣ ଏ ପ୍ରଶ୍ନର ଉତ୍ତର କହିଦେଇ ପାରିବେ ।''

ଏହା କହି ବିଶ୍ୱକର୍ମା ପର୍ଦ୍ଦା ଆଡ଼େଇ ଦେଲେ । ପର୍ଦ୍ଦା ସେପଟେ ଖଣ୍ଡିଏ ଦର୍ପଣ । ସେଥିରେ ଶିବ ପାର୍ବତୀଙ୍କ ଚେହେରା ପ୍ରତିଫଳିତ ହେଉଥିଲା ।

ବିଶ୍ୱକର୍ମାଙ୍କ ରହସ୍ୟ ଦେଖି ଶିବ ମୃଦୁ ମୃଦୁ ହସିଲେ । ଦେବର୍ଷି ନାରଦ କହିଲେ, ''ହସିଦେଲେ ତ ପ୍ରଶ୍ନର ଉତ୍ତର ମିଳିଗଲା ନାହିଁ ! ଉତ୍ତର ନିଶ୍ଚୟ ଦେବାକୁ ହେବ ।''

ଶିବ କହିଲେ, ''ଦେବୀ ମୂର୍ତ୍ତିର ପ୍ରତିଫଳନ

ହିଁ ସୁନ୍ଦର !'' ପାର୍ବତୀଙ୍କ ମୁଖମଣ୍ଡଳ ଲଜ୍ଜାରୁଣ ଦେଖାଗଲା । ସେ ମୃଦୁ କଣ୍ଠରେ କହିଲେ, ''ତ୍ରିନେତ୍ରହିଁ ସୁନ୍ଦର !''

ଚାହୁଁ ଚାହୁଁ ଏକ ସରୋବର ଉଜ୍ଜ୍ୱଳ ଦେଖାଗଲା । ସତେ ଅବା ସେ ଜଳରାଶି ସେପାରିରେ ସୂର୍ଯ୍ୟୋଦୟ ହେଉଛି । ଚାହୁଁ ଚାହୁଁ ସେ ମଧୁର ଜ୍ୟୋତି ସ୍ପଷ୍ଟତର ହେଲା । ତହିଁ ଭିତରୁ ଉଦୟ ହେଲେ ବିଘ୍ନେଶ୍ୱର ।

ହାତୀ ଭଳି ତାଙ୍କର ଶୀର । କିନ୍ତୁ ଦିବ୍ୟଭାବ ଓ ପ୍ରସନ୍ନତାରେ ତାହା ଦିଶୁଥାଏ ଗରୀୟାନ । ତାଙ୍କ ନୟନ ଯୁଗଳରେ ଯେପରି ଶାନ୍ତି, ସେହିପରି ଜ୍ଞାନ ଓ ବୁଦ୍ଧିର ପ୍ରାଚୁର୍ଯ୍ୟ । ସେ ପାର୍ବତୀଙ୍କ ଆଡ଼କୁ ଅନାଇବା ମାତ୍ରେ ପାର୍ବତୀଙ୍କ ହୃଦୟରେ ବାତ୍ସଲ୍ୟ ସ୍ନେହ ଉଚ୍ଛୁଳି ଉଠିଲା । ମନେ ହେଉଥିଲା ସେ ଦିବ୍ୟ ଶିଶୁ ବି ଯେପରି ତାଙ୍କୁ ମା ବୋଲି ସମ୍ବୋଧନ କରିବାକୁ ବ୍ୟାକୁଳ ହେଉଥିଲା ।

ଧିରେ ଧିରେ ବିଘ୍ନେଶ୍ୱର ନିକଟବର୍ତ୍ତୀ ହେବା ଭଳି ମନେ ହେଲେ । ସେ କହିଲେ, ''ମୁଁ ବିଘ୍ନେଶ୍ୱର । ସମସ୍ତ ବାଧାବିଘ୍ନ ବିନାଶକ । ମୁଁ ପଞ୍ଚ ଭୂତଗଣଙ୍କ ଅଧିପତି ଗଣପତି । ଆପଣମାନଙ୍କଠାରୁ ସନ୍ତାନ ରୂପେ ଜନ୍ମ ଗ୍ରହଣ କରି କୁମାର କାର୍ତ୍ତିକେୟ ତାରକାସୁରକୁ ବଧ କରିବେ । ତହିଁ ପୂର୍ବରୁ ମୁଁ ଅବତାର ଗ୍ରହଣ କରି ଆପଣମାନଙ୍କ ପୁତ୍ର ରୂପେ ପରିଚିତ ହେବି ।''

ଗଣପତିଙ୍କ ମୁହଁରୁ ଏହା ଶୁଣିବା ମାତ୍ରେ ତାଙ୍କୁ କୋଳକୁ ନେବା ମାନସରେ ପାର୍ବତୀ ହସ୍ତ ଯୁଗଳ ପ୍ରସାରିତ କଲେ । କିନ୍ତୁ ସଙ୍ଗେ ସଙ୍ଗେ ବିଘ୍ନେଶ୍ୱର ଅଦୃଶ୍ୟ ହୋଇଗଲେ ।

ଶିବ ପାର୍ବତୀ ପରସ୍ପର ପ୍ରଶ୍ନବାଚୀ ଦୃଷ୍ଟିରେ ଅନାଇଲେ । ଯାହା ଦେଖିଲେ ତାହା ସ୍ୱପ୍ନ ନା ସତ୍ୟ ସେମାନେ ହଠାତ୍ ତାହା ଠଉରାଇ ପାରିଲେ ନାହିଁ ।

ଶିବ ପାର୍ବତୀ ସେ ମନୋରମ ପ୍ରାସାଦରେ କାଳାତିପାତ କଲେ ।

ଏଣେ ଜଗତରେ ଦେଖାଦେଲା ଏକ ପ୍ରବଳ ଉପଦ୍ରବ । *(କ୍ରମଶଃ)*





# କୁହୁକିନୀର ବୀଣା

ବହୁତ ଦିନ ତଳର କଥା । ଗୋଟିଏ ଗ୍ରାମରେ ଜଣେ ସଙ୍ଗୀତକାର ରହୁଥିଲେ । ତା'ଙ୍କର ତିନୋଟି ପୁତ୍ର ଥିଲେ । ସେମାନେ ସମସ୍ତେ ମିଶି ସଙ୍ଗୀତ ଆସର କରୁଥିଲେ ଓ ପରିବାର ପ୍ରତିପୋଷଣ କରୁଥିଲେ । କେତେ ଦିନ ପରେ ସଙ୍ଗୀତକାର ବେମାର ପଡିଲେ ଓ ତା'ର ପ୍ରଭାବରୁ ତାଙ୍କର ଆଙ୍ଗୁଠି ଅଚଳ ହୋଇଗଲା । ତା' ସହିତ ସେ କଥା ମଧ କହିପାରିଲେ ନାହିଁ । ସେହି ଗ୍ରାମର ବୈଦ୍ୟ ତାଙ୍କୁ ପରୀକ୍ଷା କରି କହିଲେ, ''ଏହା କୌଣସି ସାଧାରଣ ରୋଗ ନୁହେଁ । ଏହାର ଚିକିତ୍ସା ଜଣେ ପ୍ରସିଦ୍ଧ ରାଜବୈଦ୍ୟଙ୍କ ଦ୍ୱାରା ହୋଇ ପାରିବ । ମୋ ପରି ଜଣେ ମାମୁଲି ବୈଦ୍ୟ ହାତର କଥା ନୁହେଁ । ରାଜବୈଦ୍ୟଙ୍କ ଠାରୁ ଚିକିତ୍ସା ପାଇବାକୁ ହେଲେ, ଆମ ଦେଶର ମୂର୍ଖ ମହାରାଜାଙ୍କ ଠାରୁ ଏଥିପାଇଁ ଅନୁମତି ଆଣିବାକୁ ପଡିବ । ତା'ଙ୍କର ସ୍ୱୀକୃତି ଓ ସୁପାରିଶ ମିଳିବା ପରେ ଯାଇ ରାଜବୈଦ୍ୟଙ୍କର ସାହାଯ୍ୟ ତୁମକୁ ମିଳି ପାରିବ । ସମସ୍ତେ ଯାହା କହୁଛନ୍ତି, ପଥରକୁ ମନେଇ ପାରିବ ସିନା, ରାଜାଙ୍କୁ ମନେଇବା, ତାଙ୍କୁ ସନ୍ତୁଷ୍ଟ କରିବା ସମ୍ପୂର୍ଣ୍ଣ ଅସମ୍ଭବ । ତେବେ ଚେଷ୍ଟା କରି ଦେଖ,'' ବୈଦ୍ୟ ନିଜର ମତ ଦେଇ ବିଦାୟ ନେଲେ ।

ତିନିପୁଅଙ୍କ ଭିତରୁ ଜ୍ୟେଷ୍ଠପୁତ୍ର ଭାଇମାନଙ୍କୁ କହିଲା, ''ମୁଁ ସ୍ୱୀକାର କରୁଛି ଯେ ରାଜା ମହାମୂର୍ଖ ଅଟନ୍ତି । କିନ୍ତୁ ମୋର ବିଶ୍ୱାସ ଯେ ମୋର ବୀଣା-ବାଦନରେ ମୁଁ ତାଙ୍କୁ ସଂତୃପ୍ତ କରି ପାରିବି ଓ ଚିକିତ୍ସା ନିମନ୍ତେ ଅନୁମତି ହାସଲ କରି ପାରିବି । ବାପାଙ୍କର ଦେହ ଭଲ ହୋଇଯିବା ଠାରୁ ଆମପାଇଁ ଆଉ କିଛି ବଡ କଥା ନୁହେଁ ।''

ସେ ରାଜାଙ୍କୁ ସାକ୍ଷାତ କରି କହିଲା, ''ପ୍ରଭୁ, ମୁଁ ବୀଣା ବାଦନ କଳାରେ ପାରଙ୍ଗମ । ମୋର ପ୍ରତିଭା ଅଛି । ମୁଁ ଆପଣଙ୍କୁ ନିଶ୍ଚୟ ସନ୍ତୁଷ୍ଟ କରି ପାରିବି । ମୋର ନିବେଦନ ଏହିକି ଯେ, ଯଦି ମୁଁ ମୋର ପ୍ରଦର୍ଶନରେ ସଫଳ ହୁଏ, ତେବେ ମୋ ପିତାଙ୍କର ଚିକିତ୍ସା ରାଜବୈଦ୍ୟଙ୍କ ଦ୍ୱାରା କରିବାକୁ ଅନୁମତି ଦେବେ ।''

ରାଜା ହସିଦେଇ କହିଲେ, ସବୁ ଲୋକଙ୍କର

ରୀତା ରାଠୋର



ଦେଖି ସାନ ଦୁଇଭାଇ ହତାଶ ହୋଇଗଲେ । ସବୁ କଥା ଜାଣିବା ପରେ ତା'ପର ଭାଇ କହିଲା, ମୃଦଙ୍ଗ ବଜାଇବାରେ ଖୁବ୍ କମ୍ ଲୋକ ଦକ୍ଷତା ପାଇଥାଆନ୍ତି । ମୁଁ ମୃଦଙ୍ଗ ବାଦନରେ ପ୍ରବୀଣ । ମୃଦଙ୍ଗ ବଜାଇ ମୁଁ ରାଜାଙ୍କର ପ୍ରଂଶସାଭାଜନ ହେବି ଓ ପିତାଙ୍କର ଚିକିତ୍ସା କରାଇବି ।''

ସେ ମଧ୍ୟ ରାଜାଙ୍କୁ ସାକ୍ଷାତ କରି କହିଲା, ''ମୃଦଙ୍ଗ ବାଦନରେ ମୋର ପରୀକ୍ଷା ନେଇ ପାରନ୍ତି । ଯଦି ମୁଁ ସଫଳ ହୁଏ, ଆପଣ ମୋ ପିତାଙ୍କର ଚିକିତ୍ସା ରାଜବୈଦ୍ୟଙ୍କ ଦ୍ୱାରା କରାଇବେ ।''

ରାଜା ତା'କୁ ଭଲଭାବେ ଦେଖିବା ପରେ କହିଲେ: ''ମନେ ହେଉଛି, ତୁମେ ବୀଣା ବାଦନ କରୁଥିବା ଲୋକର ଭାଇ । ତୁମେ ଜାଣନାହିଁ ଯେ ମୁଁ ଜଣେ ସଙ୍ଗୀତ ସମ୍ରାଟ । ମୋ ସହିତ ପ୍ରତିଯୋଗିତା କଲେ, ତୁମ ଭାଇଙ୍କର ଅବସ୍ଥା ଯାହା ହେଲା, ତୁମର ମଧ୍ୟ ସେୟା ହେବ । ଯଦି ତୁମେ ଏହି ସର୍ତ୍ତରେ ଏକମତ, ତେବେ ମୋ ସହିତ ପ୍ରତିଯୋଗିତା କରବା ପାଇଁ ଆଗଭର ହୁଅ ।''

ତା' ପରଦିନ ରାଜା ଓ ସଂଗୀତକାରଙ୍କ ଦ୍ୱିତୀୟ ପୁତ୍ର ମଧ୍ୟରେ ପ୍ରତିଯୋଗିତା ହେଲା । ରାଜାଙ୍କର ମୃଦଙ୍ଗ ବାଦନକୁ ଲୋକମାନେ ଆଦୌ ପସନ୍ଦ କଲେ ନାହିଁ । ତା'ହା ସମ୍ପୂର୍ଣ୍ଣ ବେତାଳିଆ ଥିଲା ଓ ଖରାପ ଶୁଭୁଥିଲା । ମନେ ହେଉଥିଲା, ରାଜା ମୃଦଙ୍ଗ ବାଦନର ମୂଳ ସିଦ୍ଧାନ୍ତ ସହିତ ଅପରିଚିତ । କିନ୍ତୁ ଦ୍ୱିତୀୟ ପୁତ୍ର ଖୁବ୍ ସୁନ୍ଦର ଭାବେ ନିଜର ପ୍ରତିଭା ଦେଖାଇଲେ । କିନ୍ତୁ କି ଲାଭ ? ରାଜାଙ୍କ ଭୟରେ ସାଧାରଣ ନେତା ପୁଣିଥରେ ରାଜାଙ୍କୁ ବିଜୟୀ ଘୋଷଣା କଲେ । ପରିଣାମସ୍ୱରୂପ ଦ୍ୱିତୀୟ ପୁତ୍ରକୁ ମଧ୍ୟ ବେତ ପ୍ରହାର କରାଗଲା ।

ଦ୍ୱିତୀୟ ପୁତ୍ର ବେତ ପ୍ରହାର ମାଡରେ ଗୁରୁତର

ମତ ଏହି ଯେ, ବୀଣା ବାଦନରେ ମୋର ସମକକ୍ଷ କେହି ହୋଇ ପାରିବେ ନାହିଁ । ତେଣୁ ତୁମେ ବାଜି ଲଗାଅ ଯେ, ଯଦି ତୁମେ ମୋତେ ହରାଇ ପାରିବ ତେବେ ତୁମର ଇଚ୍ଛା ପୂରଣ ହେବ । ଆଉ ଯଦି ମୁଁ ଜିତିଯାଏ, ତୁମ ଉପରେ ପଚାଶ ଥର ବେତ ପ୍ରହାର ହେବ । ଏଇ ପ୍ରତିଯୋଗିତାର ବିଚାରକ ହେବେ ସାଧାରଣ ଜନତା ।''

ସଂଗୀତକାରଙ୍କ ଜ୍ୟେଷ୍ଠପୁତ୍ର ଏହି ସର୍ତ୍ତ ସ୍ୱୀକାର କଲେ । ତା' ପରଦିନ ଜନତାଙ୍କ ସମ୍ମୁଖରେ ପ୍ରତିଯୋଗିତାର ଆୟୋଜନ ହେଲା । ଏହି ପ୍ରତିଯୋଗିତାରେ ଯଦିଓ ସଂଗୀତକାରଙ୍କ ପୁତ୍ର ଅଧିକ ନୈପୁଣ୍ୟ ପ୍ରଦର୍ଶନ କଲା, ତେବେ ମଧ୍ୟ ଲୋକମାନେ ରାଜାଙ୍କୁ ବିଜୟୀ ଘୋଷଣା କଲେ । କାରଣ ସେମାନେ ରାଜାଙ୍କୁ ଖୁବ୍ ଭୟ କରୁଥିଲେ । ଫଳସ୍ୱରୂପ ସର୍ତ୍ତାନୁସାରେ ଜ୍ୟେଷ୍ଠପୁତ୍ରଙ୍କ ଉପରେ ବେତ ପ୍ରହାର ହେଲା । ବଡ ଭାଇର ଏପରି ଅବସ୍ଥା

ଆହତ ହୋଇ ଘରକୁ ଫେରିବାରୁ ତୃତୀୟ ପୁତ୍ର ଖୁବ୍ ବ୍ୟତିବ୍ୟସ୍ତ ହୋଇ ପଡିଲା । "ସଂଗୀତକାରଙ୍କର ଦୁଇଜଣ ପୁତ୍ରଙ୍କୁ ସାଧାରଣ ଜନତାଙ୍କ ସମ୍ମୁଖରେ ରାଜା ଏତେ ନିର୍ଦ୍ଦୟ ଭାବରେ ଅପମାନିତ କଲେ । ମୁଁ ସେହି ମୂର୍ଖ ରାଜାଙ୍କୁ ବୁଦ୍ଧି ଶିଖାଇବି । ମୁଁ ଯଦି ତା' କରି ନ ପାରେ, ତେବେ କାହାକୁ ମୁହଁ ଦେଖାଇବି ନାହିଁ ।" ଏପରି କହି ସେ ବୀଣା, ମୃଦଙ୍ଗ ଓ ଶାହାନାଇ ସାଥିରେ ନେଇ ରାଜଧାନୀ ଅଭିମୁଖେ ବାହାରିଗଲା ।

ରାଜଧାନୀଠାରେ ପହଂଚିବା ପରେ ସେ ଗୋଟିଏ ସ୍ଥାନରେ ବସି ବୀଣା ବଜାଇଲା । ଏହି କାମ ସେ ଖୁବ୍ ଏକାଗ୍ରତାର ସହ ନିରବିଚ୍ଛିନ୍ନ ଭାବେ କରୁଥାଏ । ସାଧାରଣ ଜନତା ବଡ ଉତ୍ସୁକତାର ସହ ତା'ର କଳା ନୈପୁଣ୍ୟ ଲକ୍ଷ୍ୟ କରୁଥିଲେ । ତିନିଦିନ ଧରି ଏକାଦିକ୍ରମେ ବୀଣା ବଜାଇବା ଫଳରେ ତା'ର ଆଙ୍ଗୁଠିରୁ ରକ୍ତ ଝରିବାକୁ ଲାଗିଲା । ଏହି ଖବର ରାଜାଙ୍କ ପାଖରେ ପହଞ୍ଚିଲା । ସେ ମନ୍ତ୍ରୀ ପାରିଷଦଙ୍କ ସହିତ ତୁରନ୍ତ ସେଠାରେ ପହଞ୍ଚିଲେ । ରାଜାଙ୍କୁ ଦେଖିବା କ୍ଷଣି ତୃତୀୟ ପୁତ୍ର ଉଠିପଡି ନମସ୍କାର କଲା । ରାଜା ତା'ଙ୍କୁ ପ୍ରଶ୍ନ କଲେ, "ତୁମେ କିଏ ? ଏଠାରେ କ'ଣ କରୁଛ ?"

ତୃତୀୟ ପୁତ୍ର ବିନୀତ ଭାବେ କହିଲା, "ପ୍ରଭୁ, ପାର୍ବତ୍ୟ ଅଞ୍ଚଳରେ ଥିବା ଭୈରବ ଗ୍ରାମରେ ମୋର ଘର । ଥରେ ମୋ ବୟସର ଜଣେ ବାଳକ କେଉଁଠାରୁ ଆସି ଆମ ଗ୍ରାମରେ ପହଞ୍ଚିଲା ଓ ମୋ ସହିତ ଖେଳିଲା । ଦିନେ ମୋର ତାଳସଜ ଖାଇବାକୁ ମନ ହେଲା । ମୁଁ ତାଳ ପାରିବା ପାଇଁ ତରବାରୀ ଧରି ବାହାରିଲି । ସେ ମଧ୍ୟ ମୋ ସହିତ ଚାଲିଲା । ଗ୍ରୀଷ୍ମ କାଳ ଖୁବ୍ ଗରମ ପଡୁଥାଏ । ଗ୍ରାମ ବାହାରକୁ ଆସିବା ପରେ ଗରମରୁ ରକ୍ଷା ପାଇବା ପାଇଁ ମୁଁ ପୋଖରୀକୁ ଡେଇଁ ପଡିଲି ।




ସେ ମଧ୍ୟ ମୋ ସହିତ ପୋଖରୀ ଭିତରେ ପଶିଲା । ମାତ୍ର ବହୁତ ସମୟ ଧରି ବାହାରକୁ ଆସିଲା ନାହିଁ । ମୁଁ ଭୟ ପାଇଗଲି, ମୁଁ କମରରେ ତରବାରୀ ବାନ୍ଧି ଦେଇ ପୋଖରୀ ଭିତରେ ପୁଣି ଥରେ ପଶିଲି । ଖୁବ୍ ଗଭୀରକୁ ଗଲି । ସେଠାରେ ପହଁଚିବା ପରେ ମୁଁ ଦେଖିବାକୁ ପାଇଲି ଯେ, ଗୋଟିଏ ବିଚିତ୍ର ସର୍ପ ତା'କୁ ଗିଳିବାରେ ଲାଗିଛି । ଗୋଟିଏ ମୁହୂର୍ତ୍ତ ମଧ୍ୟ ବିଳମ୍ବ ନକରି ମୁଁ ସେହି ସର୍ପକୁ ଖଣ୍ଡ ଖଣ୍ଡ କରିଦେଲି । ସେ ମୋ ପ୍ରତି କୃତଜ୍ଞତା ଜଣାଇଲା ଓ ତା'ଙ୍କ ଘରକୁ ଯିବା ପାଇଁ ମୋତେ ଅନୁରୋଧ କଲା । ତା'ର ଘରକୁ ଯିବା ପାଇଁ ପାହାଡ ପରେ ଜଙ୍ଗଲ ଟପିକରି ଯିବାକୁ ପଡିବ । ଶେଷରେ ସେ ମୋତେ ପାହାଡର ଗୋଟିଏ କୋଣକୁ ନେଇଗଲା । ସେଇ କୋଣରେ ଗୋଟିଏ ଗୁମ୍ଫା ଥିଲା । ମୁଁ ସେଇ ଗୁମ୍ଫାରେ ଦେଖିଲି ଯେ କାନ୍ଧରେ ପାଚିଲା ବାଳ ଝୁଲୁଥିବା ଜଣେ କୁହୁକିନୀ ସ୍ତ୍ରୀ ଲୋକ ଗୋଟିଏ



ଲେପ ବୋଲିଥିଲା, ସେହି କାନ୍ଥ ଦର୍ପଣ ପରି ସ୍ୱଚ୍ଛ ହୋଇଗଲା । ସେହି ଦର୍ପଣରେ ସେ ସେଇ ପୋଖରୀକୁ ଦେଖିଲା, ଯେଉଁଠାରେ ତା'ର ପୁଅ ବୁଡି ଯାଇଥିଲା ଓ ସେହି ସାପକୁ ସେଠାରେ ମରି ପଡିଥିବାର ଦେଖିଲା । ଏହି ଦୃଶ୍ୟ ଦେଖି ସେ ଖୁବ୍ ରାଗିଗଲା ଓ ଗୁଣୁ ଗୁଣୁ ହୋଇ କ'ଣ ମନ୍ତ୍ର ପାଠ କଲା । ତା'ପରେ ମୋ ପିଠି ଥାପୁଡେଇ କହିଲା, ''ସାବାସ୍ ବେଟା, ତୁ ଗୋଟିଏ ସର୍ପକୁ ନୁହଁ, ମୋର ଜଣେ ଦୃଢ଼ ବିରୋଧୀ କୁହୁକୁନୀକୁ ହତ୍ୟା କରିଛୁ । ତେଣୁ ଉପହାର ସ୍ୱରୂପ ମୁଁ ତୋତେ ଏଇ ଚମ୍ତ୍କାରୀ ବୀଣା, ମୃଦଙ୍ଗ ଓ ଶାହାନାଇ ଦେଉଛି । ତୁ ଏହି ଚମ୍ତ୍କାର ବୀଣାକୁ ଖୁବ୍ ଭଲଭାବେ ବଜାଇ ପାରିଲେ, ଏହାର ମହିମାରୁ ଦୁଇ ଜଣ ଯୁବକ ଜନ୍ମ ନେବେ । ସେମାନେ ଏହି ମୃଦଙ୍ଗ ଓ ଶାହାନାଇ ବାଦନ କରି ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେବେ ।''

ପଥର ଉପରେ କିଛି ଘଷୁଥିଲା । ତା'ର ଆଖି ଦୀପ ପରି ଜଳୁଥିଲା । ମୋ ବନ୍ଧୁ ସେହି କୁହୁକିନୀ ପାଖକୁ ଗଲା । ତା'କୁ ଦେଖିବା କ୍ଷଣି ସେହି ସ୍ତ୍ରୀ ଲୋକ ତାକୁ କୁଣ୍ଢାଇ ପକାଇ ଗେଲ କଲା । ''କୁଆଡେ ଚାଲି ଯାଇଥିଲୁ ପୁଅ ? ଫେରିବାରେ ଏତେ ଡେରି କଲୁ । ତୋତେ ପାହାଡି ଝିଟିପିଟି ତରକାରୀ ଖୁବ୍ ଭଲଲାଗେ ପରା ! ଆଜି ମୁଁ ସେଇ ତରକାରୀ କରିଛି ।'' ସେଇ ବାଳକ ମୋର ପରିଚୟ କରାଇ ଦେଇ କହିଲା: ''ମା', ଯେ ହେଉଛି ମୋର ପରମ ମିତ୍ର । ଆଜି ତା' ଯୋଗୁଁ ମୁଁ ମରୁ ମରୁ ବଞ୍ଚିଗଲି ।'' ତା'ପରେ ଯାହା ସବୁ ଘଟିଥିଲା, ତାହା ତା' ମା'ଙ୍କ ଆଗରେ ବର୍ଣ୍ଣନା କଲା ।

କୁହୁକିନୀ ମନ୍ତ୍ରପାଠ କରି ତା' ହାତରେ କିଛି ଲେପ ଆଣିଲା । କାନ୍ଥରେ ସେହି ଲେପ ଘଷିଦେଲା ଓ ଉଚ୍ଚସ୍ୱରରେ ମନ୍ତ୍ରପାଠ କଲା । ଯେଉଁ କାନ୍ଥରେ

''ସେଇ କୁହୁକିନୀ ଠାରୁ ପାଇଥିବା ବୀଣା ମୁଁ ତିନିଦିନ ଧରି କ୍ରମାଗତ ଭାବେ ବଜାଇ ଚାଲିଛି, କିନ୍ତୁ ଆଜି ଯାଏଁ ସେହି ଦୁଇ ଯୁବକ ପ୍ରକଟିତ ହେଲେ ନାହିଁ । ମୋର ଯାହା ମନେ ହେଉଛି, ସେହି କୁହୁକିନୀ ମୋତେ ପ୍ରତାରିତ କରିଛି ।''

ରାଜା ତା'ର କଥା ଶୁଣି ଜୋର୍‌ରେ ହସି ଉଠି କହିଲେ, ''ଆରେ ପାଗଳ, ତୁମେ ଯାହା ଭାବୁଛ ଠିକ୍ ନୁହେଁ । ସେ ତୁମକୁ କ'ଣ କହିଥିଲା ମନେ ଅଛି ଟି ? ସେ କହିଥିଲା ଯେ, ତୁମେ ଭଲଭାବେ ବୀଣା ବଜାଇ ପାରିଲେ ତା'ର ମହିମାରୁ ଯୁବକ ଦୁଇଜଣ ପ୍ରକଟିତ ହେବେ । ତୁମକୁ ଠିକ୍ ଭାବେ ବୀଣା ବଜାଇ ଆସେ ନାହିଁ, ଅଥଚ ତୁମେ ସେଇ କୁହୁକିନୀକୁ ଦୋଷ ଦେଉଛ । ଏବେ ମୁଁ ସ୍ୱୟଂ ବୀଣା ବଜାଇବି, ଆଉ ଦେଖିବ ସେଇ ଦୁଇଟି ଯୁବକ କିପରି ପ୍ରକଟିତ ହେବେ ।'' ଏହା କହି

ରାଜା ତା' ହାତରୁ ବୀଣା ନେଇଗଲେ ଓ ତା'ର ତନ୍ତ୍ରୀକୁ ଝଂକୃତ କରିବା ଆରମ୍ଭ କଲେ ।

ରାଜା ବୀଣା ବଜାଇ ବଜାଇ ଥକି ଗଲେ, ମାତ୍ର ସେହି ତଥାକଥିତ ଯୁବକ ଦୁଇଜଣଙ୍କର ଦର୍ଶନ ମିଳିଲା ନାହିଁ ।

ରାଜା ବିରକ୍ତ ହୋଇଗଲେ ଓ କହିଲେ, ''ମୁଁ ହେଉଛି ସଂଗୀତ ସମ୍ରାଟ, ମୋର ମହିମା କାମ କରୁନାହିଁ । ଏହି ବୀଣା କୌଣସି ଅସାଧାରଣ ବୀଣା ମନେ ହେଉଛି । ସଂଗୀତରେ ମୋ ଠାରୁ କେହି ଅଧିକ ଜ୍ଞାନ ହାସଲ କରିଥିବା ବ୍ୟକ୍ତି ଏହାକୁ ବଜାଇ ପାରିବ । ଦଶହରା ଉତ୍ସବ ସମୟରେ ମୁଁ ଏହି ପ୍ରତିଯୋଗିତା କରାଇବି । ସେହି ପ୍ରତିଯୋଗିତାରେ ସଫଳ ହୋଇ ଯୁବକ ଦୁଇ ଜଣଙ୍କୁ ଯିଏ ପ୍ରକଟିତ କରାଇ ପାରିବ, ମୁଁ ତା'କୁ ଅମୂଲ୍ୟ ଉପହାର ପ୍ରଦାନ କରିବି ।'' ଏହା କହି ସେ ନିଜ ସହିତ ସବୁ ବାଦ୍ୟ ନେଇ ଗଲେ । ତା' ପରଦିନ ରାଜାଙ୍କର ଘୋଷଣା ଜାରୀ କରାଗଲା ।

କିଛି ଦିନ ପରେ ଦଶହରା ଉତ୍ସବ ଆସିଲା । ଶେଷ ଦିବସରେ ରାଜା ବୀଣା ପ୍ରତିଯୋଗିତାର ଆୟୋଜନ କଲେ । ବହୁ ବୀଣାବାଦକ ଚେଷ୍ଟା କଲେ, ମାତ୍ର କେହି ସଫଳ ହେଲେ ନାହିଁ । ଶେଷରେ ସଂଗୀତକାରଙ୍କ ତୃତୀୟ ପୁତ୍ର ମଞ୍ଚ ଉପରେ ଆସୀନ ରାଜାଙ୍କୁ ପ୍ରଣାମ ଜଣାଇ କହିଲା, ରାଜନ୍, ଯେଉଁଦିନ ଆପଣ ଏହି ପ୍ରତିଯୋଗିତାର ଆୟୋଜନ କରାଇଲେ, ସେହି ଦିନଠାରୁ ମୁଁ ଜଣେ ବିଶିଷ୍ଟ ସଂଗୀତକାରଙ୍କ ପାଖରେ ବୀଣା ବାଦନ ଶିକ୍ଷା ଲାଭ କରୁଥିଲି । ମୋ ମତରେ, ଏହି ବୀଣାକୁ ଏବେ ମୁଁ ସଠିକ୍ ଭାବେ ବଜାଇ ପାରିବି । ଆପଣ ଅନୁମତି ଦେଲେ, ମୁଁ ଚେଷ୍ଟା କରିବି ।'' ରାଜା ଅଟ୍ଟହାସ୍ୟ କରି କହିଲେ, ''ହଁ, ହଁ କାହିଁକି ନୁହେଁ ?'' ତା'ଙ୍କ କଥାରେ ବ୍ୟଙ୍ଗ ରହିଥିଲା ।

ତୃତୀୟ ପୁତ୍ର ବୀଣା ସମ୍ମୁଖରେ ଆସନ ପାରି ବସିଲା ଓ ଇଷ୍ଟଦେବୀଙ୍କୁ ସୁମରଣା କଲା । କିଛି ସମୟ ପରେ ସଂଗୀତକାରଙ୍କ ପ୍ରଥମ ଓ ଦ୍ୱିତୀୟ ପୁତ୍ର ଛଦ୍ମବେଶରେ ବିଚିତ୍ର ରୂପ ଧାରଣ କରି ସେଠାରେ ଉପସ୍ଥିତ ହେଲେ ଓ ଶାହାନାଇ, ମୃଦଙ୍ଗ ଧରି ବସି ପଡିଲେ । ସେମାନେ ବଡ ଦକ୍ଷତାର ସହିତ ବାଦ୍ୟ ପରିବେଷଣ କଲେ । ଉପସ୍ଥିତ ଜନତା କରତାଳି ଦ୍ୱାରା ସେମାନଙ୍କୁ ଅଭିନନ୍ଦନ ଜଣାଇଲେ ।

ଘୋଷଣା ଅନୁସାରେ ରାଜା ତୃତୀୟ ପୁତ୍ରକୁ ଭବ୍ୟ ସ୍ୱାଗତ ଜଣାଇଲେ ଓ ତା'ଙ୍କ ପିତାଙ୍କର ଚିକିତ୍ସା ରାଜବୈଦ୍ୟଙ୍କ ଦ୍ୱାରା କରାଇଲେ ।





# ଶାନ୍ତାର ଉପାୟ

ନରେନ୍ଦ୍ର ଜଣେ ସୁନ୍ଦର ଯୁବକ । ତା'ର ବହୁତ ଇଚ୍ଛା ଯେ ତା'କୁ ସମସ୍ତେ ପ୍ରଶଂସା କରନ୍ତୁ ଓ ମହାନ୍ ବୋଲି ଭାବନ୍ତୁ । ଏଥିପାଇଁ ସେ ପର୍ଯ୍ୟାପ୍ତ ଧନ ଅର୍ଜନ କଲା । କିନ୍ତୁ ଏପରି ଧନୀ ଲୋକ ଅନେକ ଅଛନ୍ତି । ସେମାନଙ୍କ ମଧ୍ୟରୁ ସେ କେବଳ ମାତ୍ର ଜଣେ । ତେଣୁ ସେଥିପାଇଁ କେହି ତା'କୁ ମହାନ୍ ବୋଲି ବିବେଚନା କଲେ ନାହିଁ କି ପ୍ରଶଂସା ଢ଼ାଳିଲେ ନାହିଁ ।

ସେ ଚିନ୍ତା କଲା ଯେ, ସେ ଏପରି କୌଣସି ସାହସିକ କାର୍ଯ୍ୟ କରିବ, ଯାହା ଫଳରେ ତା'କୁ ସମସ୍ତେ ପ୍ରଶଂସା କରିବେ । କିନ୍ତୁ ସେପରି ସାହସୀ ଲୋକ ଅନେକ ଥିଲେ । ଯେଉଁମାନେ ତା'ଠାରୁ ବି ସାହସିକ କାର୍ଯ୍ୟ କରିଥିଲେ । ନରେନ୍ଦ୍ର କ'ଣ କରିବ ଭାବି ପାରୁ ନଥିଲା !

ଶାନ୍ତା ହେଉଛି ସେହି ଗ୍ରାମର ଗୋଟିଏ ଝିଅ । ସେ ନରେନ୍ଦ୍ରକୁ ଖୁବ୍ ଭଲ ପାଏ । ନରେନ୍ଦ୍ରର ବିଚାରଧାରା ସହିତ ପରିଚିତ ହେବା ପରେ ସେ ଦିନେ ତା'କୁ କହିଲା, "ବଡପଣ ଓ ମହାନତା ଆପେ ଆପେ ଆସି ପହଞ୍ଚେ । ଏହା ପଛରେ ଗୋଡାଇଲେ କିଛି ହାସଲ କରି ହୁଏ ନାହିଁ । ମୋତେ ବିବାହ କର । ମୁଁ ତୁମକୁ ମହାନ ବନାଇ ଦେବି ।"

ନରେନ୍ଦ୍ର ହସି ଦେଇ ବ୍ୟଙ୍ଗଭରା ସ୍ୱରରେ କହିଲା, "ଆଚ୍ଛା, ତେବେ ଏପରି କଥା ! ଦେଖ ଶାନ୍ତା ! ମୁଁ ତୁମକୁ ଖୁବ୍ ଭଲ ପାଏ । ତୁମକୁ ବିବାହ ମଧ୍ୟ କରିବାକୁ ଚାହେଁ । ତୁମେ କହୁଛ ଯେ, ତୁମେ ମୋତେ ମହାନ କରିଦେବ । ତେବେ ଏହି କାମ ବିବାହ ପୂର୍ବରୁ ମଧ୍ୟ କରାଇ ପାରିବ । ତୁମ କଥାରେ ତୁମେ ସଫଳ ହେଲେ ଆମର ବିବାହ ଯଥାଶୀଘ୍ର ହୋଇଯିବ ।"

"ତେବେ ଶୁଣ ! ମୁଁ ତୁମକୁ ଗୋଟିଏ ବଡ ଉପାୟ ଦେବା ପୂର୍ବରୁ ଶପଥ କରିବାକୁ ପଡିବ ଯେ, ତୁମେ ମୋତେ ହିଁ ବିବାହ କରିବ । ମୋ ବ୍ୟତୀତ ଆଉ କାହାକୁ ବିବାହ କରିବ ନାହିଁ ।"

ନରେନ୍ଦ୍ର କିଛି ଚିନ୍ତା ବିଚାର ନ କରି ତୁରନ୍ତ କହି ଦେଲା ଯେ, "ତୁମେ ମଧ୍ୟ କିପରି ଭାବି ପାରୁଛ ଯେ, ମୁଁ ଅନ୍ୟ କାହାକୁ ବିବାହ କରି ପାରେ । ମୁଁ ଏବେ ତୁମର ରାଣ ଖାଉଛି ଓ ଶପଥ

କରୁଛି ।''

''ଋଣ ଖାଇବା କିଛି ଦରକାର ନାହିଁ । ମାତ୍ର ଗୋଟିଏ କାମ କର । ସାରା ଗ୍ରାମରେ ପ୍ରଚାର କରି ଆସ ଯେ, ତୁମେ ମୋତେ ଭଲ ପାଅ । ଆଉ ଯେ କୌଣସି ପରିସ୍ଥିତିରେ ମୋତେ ବିବାହ କରିବ ଓ ଅନ୍ୟ କାହାକୁ ବିବାହ କରିବା କଥା ଆଦୌ ସମ୍ଭବ ନୁହେଁ ।'' ଶାନ୍ତା କହିଲା ।

ଏହା ଶୁଣି ନରେନ୍ଦ୍ର ଚିଡ଼ି ଉଠି କହିଲା: ''ତୁମର ମୋ ଉପରେ ବିଶ୍ୱାସ ନାହିଁ, ତେଣୁ ଏପରି ବାହାନା କରୁଛ ।''

ଶାନ୍ତା ମୁହଁ ଶୁଖାଇ କହିଲା: ''ଏପରି କାହିଁକି କହୁଛ ? ଗ୍ରମରେ ସବୁ କଥା ପ୍ରଚାର ହୋଇଯିବା ଦ୍ୱାରା ମୋର ଉପାୟ ସଫଳ ହେବ । ମୋ କଥା ଶୁଣ । ମୋ ଉପରେ ବିଶ୍ୱାସ ରଖି ଏକ ମାସ ଯାଏଁ ଏହି କଥା ଗ୍ରାମରେ ପ୍ରଚାର କର । ଆସନ୍ତା ମାସରେ ଆମ ଦେଶର ରାଜକୁମାରୀ ପାଖ ଜଙ୍ଗଲକୁ ବନ ବିହାର କରିବାକୁ ଆସିବେ । ସେହି ସମୟରେ ତୁମେ ତା'ଙ୍କର ପାଖରେ ରହି କୌଣସି ସାହସିକ କାର୍ଯ୍ୟ କରି ଦେଖାଇବ, ଯାହା ଫଳରେ ସେ ତୁମ ଉପରେ ଖୁବ ପ୍ରସନ୍ନ ହେବେ । ସେତେବେଳେ ସେ ତୁମକୁ କିଛି ମାଗିବାକୁ କହିବେ ।'' ଶାନ୍ତା କହୁ କହୁ ଅଟକି ଗଲା ।

ନରେନ୍ଦ୍ର ସବୁ ଯୋଜନା ପାଇଁ ଆତୁର ହୋଇ ଉଠିଲା । ପୁନର୍ବାର ଅନୁରୋଧ କଲାରୁ ଶାନ୍ତା କହିଲା, ''ରାଜକୁମାରୀ ତୁମକୁ ବିବାହ କରିବାକୁ ପ୍ରସ୍ତାବ ଦେବେ । କିନ୍ତୁ ତୁମେ ତା'ଙ୍କ କଥାକୁ ଆଦୌ ଗ୍ରହଣ କରିବ ନାହିଁ । ଲୋକମାନେ ଏହା ଜାଣିବା ପରେ ତୁମକୁ ଖୁବ୍ ପ୍ରଶଂସା କରିବେ ଓ କହିବେ ଯେ ନରେନ୍ଦ୍ର ଶାନ୍ତାକୁ ବିବାହ କରିବା ପାଇଁ ରାଜକୁମାରୀଙ୍କ ପ୍ରସ୍ତାବକୁ ମଧ୍ୟ ଅସ୍ୱୀକାର କଲା । ସେ ତା'କୁ ଜୀବନ ଠାରୁ ବଳି ଭଲପାଏ । ଏହା ଫଳରେ ତୁମେ ମହାନ ହୋଇଯିବ ।''



ଶାନ୍ତା ସବୁ କଥା କହିବା ପରେ ଏହା ମଧ୍ୟ କହିଲା ଯେ, ''ଏହି ସଂସାରରେ ତ୍ୟାଗଠାରୁ ବଳି ଆଉ କିଛି ମହାନ କଥା ନାହିଁ । ତେଣୁ ତୁମେ ମୋ ଉପାୟରେ ନିଶ୍ଚୟ ସଫଳ ହେବ ।''

''ମୁଁ ବିଶ୍ୱାସ କରି ପାରୁନାହିଁ ଯେ, ଏତେ ଛୋଟ କଥାରେ ମୋର ନାମ ହେବ ଓ ମୋତେ ପ୍ରସିଦ୍ଧି ମିଳିଯିବ । ତେବେ ମଧ୍ୟ ତୁମର ଯୋଜନା ଚମତ୍କାର ମନେ ହେଉଛି । ତୁମେ ଯେପରି କହୁଛ, ସେପରି କରିବା ।'' ନରେନ୍ଦ୍ର ଦୀର୍ଘ ଶ୍ୱାସ ପକାଇ କହିଲା ।

ତା' ପରଦିନ ଗ୍ରାମର ଲୋକମାନେ ଜାଣିଗଲେ ଯେ ନରେନ୍ଦ୍ର ଶାନ୍ତାକୁ ନିଜର ଜୀବନଠାରୁ ବଳି ଭଲପାଏ ଓ ସେ ତାକୁ ହିଁ ବିବାହ କରିବ । ଅନ୍ୟ କୌଣସି ଝିଅକୁ ସେ ଆଡ ଆଖିରେ ବି ନଜର ପକାଏ ନାହିଁ ।

ଦିନେ ଶାନ୍ତା ନରେନ୍ଦ୍ରକୁ ଭେଟି କହିଲା:



''ରାଜକୁମାରୀଙ୍କର କାଲି ପାଖ ଜଙ୍ଗଲକୁ ଆସିବାର ଅଛି । ତୁମେ ସେଠାରେ କିଛି ବାହାଦୁରୀ ଦେଖାଅ ଓ ଆମ ଯୋଜନାକୁ ସଫଳ କର । ନିଜ ପାଖରେ ଗୋଟିଏ ତରବାରୀ ଥିଲେ ଭଲ ହେବ ।''

ଶାନ୍ତାର ଦାଦା ରାଜା ଦରବାରରେ କାମ କରନ୍ତି । ତାଙ୍କ ମାଧ୍ୟମରେ ରାଜପରିବାର ସମ୍ବନ୍ଧରେ ଅନେକ ରହସ୍ୟ ଶାନ୍ତାର ପରିବାର ଲୋକ ଜାଣି ପାରନ୍ତି । ନରେନ୍ଦ୍ର ଏହି କଥା ଆଗରୁ ଜାଣିଥିଲା । ତେଣୁ ଶାନ୍ତାର କଥାରେ କୌଣସି ସନ୍ଦେହ ପ୍ରକଟ ନ କରି ତା'ପରଦିନ ସେ ଜଙ୍ଗଲକୁ ଚାଲିଗଲା ।

ଅନତିଦୂର ଯିବା ପରେ ତା'କୁ ଏକ ସ୍ତ୍ରୀ ଲୋକର ଆର୍ତ୍ତନାଦ ଶୁଭିଲା, ''ରକ୍ଷା କର, ରକ୍ଷା କର ।'' ସେ ସେହି ଦିଗରେ ଧାଇଁଗଲା । ଗୋଟିଏ ମୋଟା ନିଶବାଲା ଲୋକ, ଜଣେ ସୁନ୍ଦରୀ ଯୁବତୀକୁ ତରବାରୀ ଦେଖାଇ ଧମକ ଦେଉଛି । ନରେନ୍ଦ୍ର କାଳ ବିଳମ୍ବ ନ କରି ନିଜର ତରବାରୀ କାଢ଼ିଲା ଓ ତା' ଉପରେ ଆକ୍ରମଣ କଲା । ଦୁଇଜଣଙ୍କ ମଧ୍ୟରେ କିଛି ସମୟ ଲାଗି ଲଢ଼େଇ ଲାଗିଲା ଓ ଶେଷରେ ମୋଟା ନିଶବାଲା ନରେନ୍ଦ୍ରର ବାହାଦୁରୀ ଆଗରେ ତିଷ୍ଠି ପାରିଲା ନାହିଁ । ସେ ସେଠାରୁ ପଳାୟନ କଲା ।

''ମହାବୀର, ଠିକ୍ ସମୟରେ ଆପଣ ମୋତେ ରକ୍ଷା କଲେ । ମୁଁ ଏହି ଦେଶର ରାଜକୁମାରୀ । ମୋର ନାମ ଶଶୀରେଖା ।'' ଏପରି ସେହି ରାଜକୁମାରୀ ନିଜେ ନିଜର ପରିଚୟ ପ୍ରଦାନ କଲେ ଓ ଜଙ୍ଗଲକୁ ଆସିବାର କାରଣ ଜଣାଇଲେ ।

ନିଜର ସବୁ କଥା କହି ସାରିବା ପରେ ରାଜକୁମାରୀ ନରେନ୍ଦ୍ରକୁ କହିଲେ, ''ମହାବୀର, ସେହି ମୋଟା ନିଶବାଲା ଆମ ସୈନ୍ୟବାହିନୀରେ ଜଣେ ବରିଷ୍ଠ ଖଡ୍‌ଗବୀର । ତୁମେ ମୋତେ ରକ୍ଷା କରିବା ପାଇଁ ତା'ପରି ଜଣେ ଯୋଦ୍ଧାର ମୁକାବିଲା କରିଛ । ସେ ଯେପରି ଭୀତତ୍ରସ୍ତ ହୋଇ ପଳାୟନ କଲା, ସେଥିରୁ ପ୍ରମାଣିତ ହେଉଛି ଯେ ଖଡ୍‌ଗ ଯୁଦ୍ଧରେ ତୁମେ ତା'ଠାରୁ ମଧ୍ୟ ଅଧିକ ଦକ୍ଷ । ତୁମେ ସୁନ୍ଦର, ସାହସୀ ଓ ପରାକ୍ରମୀ । କାଲି ମୁଁ ତୁମ ଘରକୁ ରଥ ପଠାଇବି । ତୁମେ ମୋତେ ବିବାହ କରି ଏହି ଦେଶର ରାଜା ହୁଅ ଓ ଦେଶକୁ ରକ୍ଷାକର ।'' ରାଜକୁମାରୀ କହିଲେ ।

ନରେନ୍ଦ୍ର ବାକ୍‌ଶୂନ୍ୟ ହୋଇ ପଡ଼ିଲା । ଶଶୀରେଖା ଦେଖିବାକୁ ଅତି ସୁନ୍ଦର । ତା' ସହିତ ସେ ହେଉଛି ଦେଶର ରାଜକୁମାରୀ । ସତରେ ଏହାଠାରୁ ବଳି ଆଉ କ'ଣ ସୌଭାଗ୍ୟ ଅଛି ।

ନରେନ୍ଦ୍ର ତାଙ୍କୁ ଶାନ୍ତା ଓ ନିଜର ପ୍ରେମ କାହାଣୀ ସମ୍ପର୍କରେ କିଛି ଜଣାଇଲା ନାହିଁ । ତା'ର ମହାନ ହେବାର ସ୍ୱପ୍ନ ଯେ ପୂରଣ ହେବାକୁ ଯାଉଛି, ଏହା ଭାବି ସେ ଖୁବ୍ ଖୁସି ଥିଲା । ସେ ହୁଏତ ଦେଶର ରାଜା ହୋଇପାରେ । ଅତ୍ୟନ୍ତ ପ୍ରଫୁଲ୍ଲିତ

ଚିତ୍ତରେ ସେ ରାଜକୁମାରୀଙ୍କୁ ଜଣାଇଲା, ‘‘ତୁମର ପ୍ରତିଟି ଶବ୍ଦ ମୋ ପାଇଁ ପଥରର ଗାର ପରି। ତୁମେ ଯେପରି ଚାହିଁବ, ଠିକ୍ ସେପରି ହେବ।’’

ନରେନ୍ଦ୍ର ଘରକୁ ଫେରି ଆସିଲା। ସାରା ରାତି ସ୍ୱପ୍ନ ଦେଖିବାରେ ଲାଗିଲା। ସ୍ୱପ୍ନରେ ଦେଖିଲା ଯେ, ସେ ଦେଶର ରାଜା ହୋଇ ସିଂହାସନ ଉପରେ ବସିଛି ଓ ଲୋକମାନେ ତା’କୁ ପ୍ରଣାମ ଜଣାଉଛନ୍ତି।

ତା’ ପରଦିନ ନରେନ୍ଦ୍ରର ଗୃହ ସମ୍ମୁଖରେ ଗୋଟିଏ ରଥ ଅଟକିଲା। ସେଥିରୁ ଜଣେ ମୋଟା ନିଶବାଲା ଲୋକ ଓ ଶଶୀରେଖା ଓହ୍ଲାଇଲେ ଓ ସିଧା ଘର ଭିତରକୁ ଗଲେ। ନରେନ୍ଦ୍ରର ବାପା ସେମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ। ମୋଟା ନିଶବାଲା ତା’ଙ୍କୁ କହିଲା, ‘‘ଆମେ ତୁମ ପୁତ୍ର ସହିତ ବିବାହ ସମ୍ପର୍କରେ କଥା ହେବାକୁ ଆସିଛୁ।’’

ନରେନ୍ଦ୍ରର ପିତା ବ୍ୟସ୍ତ ହୋଇପଡି କହିଲେ: ‘‘ମହାଶୟ, ମୁଁ ଆପଣଙ୍କର ପରିଚୟ ଜାଣି ପାରେ କି ?’’ ପରୀକ୍ଷାରୁ ଜାଣି ପାରିଲୁ ଯେ ତୁମ ପୁତ୍ର ନିଜର ଶପଥ ଭୁଲି ଯାଇଛି। ସେ ଲୋଭାସକ୍ତ ହୋଇ ପଡିଛି। ତେବେ ମଧ୍ୟ ଶାନ୍ତା ତା’କୁ ବିବାହ କରିବାକୁ ଜିଦ୍ ଧରିଛି। ଆମେ ସେହି ବିବାହ ପ୍ରସ୍ତାବ ପକ୍କା କରିବାକୁ ଆସିଛୁ। ଶାନ୍ତାର ମାତା ପିତା କିଛି ସମୟ ପରେ ଏଠାରେ ପହଞ୍ଚିବେ।’’

ଏହା ଶୁଣିବା ପରେ ପିତାଙ୍କ ନିକଟରେ ଠିଆ ହୋଇଥିବା ନରେନ୍ଦ୍ରର ମୁହଁ ଶୁଖିଗଲା। ଲଜ୍ଜ୍ୟାରେ ତା’ର ମୁଣ୍ଡ ତଳକୁ ହୋଇଗଲା। ସେହିଦିନ ଶାନ୍ତା ସହିତ ତା’ର ବିବାହ ସ୍ଥିର ହୋଇଗଲା।

ନରେନ୍ଦ୍ର ଶାନ୍ତାକୁ ଏକାନ୍ତରେ ସାକ୍ଷାତ କରି ପଚାରିଲା, ‘‘ଶାନ୍ତା, ତୁମ ଯୋଜନା ଦ୍ୱାରା ମୁଁ ମହାନ ହେବା ପାଇଁ ଆଶା କରିଥିଲି। କିନ୍ତୁ ତାହା ହେଲା ନାହିଁ। କିନ୍ତୁ ତୁମେ ମୋତେ ବିବାହ କରିବାର ଯୋଜନାରେ ସଫଳ ହୋଇଗଲ।’’

ଶାନ୍ତା ସ୍ମିତ ହସି କହିଲା: ‘‘ଅନେକ ଲୋକ ଭାବନ୍ତି ଯେ, ଧନ, ପ୍ରେମ, ଶକ୍ତି, କ୍ଷମତା ଦ୍ୱାରା ମହାନତା ପ୍ରାପ୍ତି ହୁଏ। କିନ୍ତୁ ମହାନତା ଥାଏ ତ୍ୟାଗରେ। ମୁଁ ଚାହୁଁଥିଲି ଯେ, ତ୍ୟାଗ କେତେ କଷ୍ଟକର କଥା, ତାହା ତୁମେ ନିଜେ ଅନୁଭବ କର। ଏହା ତୁମକୁ ଜଣାଇବା ପାଇଁ ମୁଁ ଏହି ନାଟକ ରଚନା କରିଥିଲି। ଭବିଷ୍ୟତରେ ଆଉ କେବେ ମହାନ ହେବାର ସ୍ୱପ୍ନ ଦେଖିବ ନାହିଁ। ସୁଖରେ ଆମେ ଘର ସଂସାର କରିବା।’’

ଭାବୀ ପତ୍ନୀର ବିବେକ ଓ ବିଚାର ଶକ୍ତି ଉପରେ ନରେନ୍ଦ୍ର ମୁଗ୍ଧ ହେଲା ଓ ମହାନ ହେବାର ସ୍ୱପ୍ନ ତ୍ୟାଗ କଲା।





# ଆଦ୍ରା ନକ୍ଷତ୍ରର ବର୍ଷା

ମାଣିକ୍ୟ ବର୍ମା ବଙ୍ଗ ଦେଶର ରାଜା ଥିଲେ । ତା'ଙ୍କ ଦରବାରରେ କୀର୍ତ୍ତିସେନା ନାମକ ଜଣେ ରାଜନର୍ତ୍ତକୀ ଥିଲେ । ସେ ଥିଲେ ଅପୂର୍ବ ସୁନ୍ଦରୀ ।

ମାତ୍ର ଦୁଃଖର କଥା, ତା'ଙ୍କ ଶରୀରରେ କୌଣସି ପରିବର୍ତ୍ତନ ଘଟି, ତାଙ୍କର ସୁନ୍ଦର କେଶରାଶି ଝଡିବାକୁ ଆରମ୍ଭ କଲା । ସେ ଖୁବ୍ ଡରିଗଲେ ଓ ରାଜବୈଦ୍ୟଙ୍କ ଦ୍ୱାରା ଚିକିତ୍ସା କଲେ ମାତ୍ର କୌଣସି ସୁଫଳ ମିଳିଲା ନାହିଁ । ତା'ଙ୍କର କେଶ ସେହିପରି ଝଡ଼ିବାରେ ଲାଗିଲା ।

ଏହା ଦେଖି ରାଜବୈଦ୍ୟ କହିଲେ, ''ପୁତ୍ରୀ କୀର୍ତ୍ତିସେନା, ଯେତେବେଳେ କୌଣସି ରୋଗର ଚିକିତ୍ସା ହୋଇପାରେ ନାହିଁ, ସେତେବେଳେ ଆମେ ଭଗବାନର ଶରଣ ନେଇଥାଉ । ସେପରି ପରିସ୍ଥିତିରେ ଭଗବାନ ହିଁ କେବଳ ଆରୋଗ୍ୟ କରିପାରିବେ । ଆମ ରାଜ୍ୟର ସୁରପୁର ନାମକ ଗ୍ରାମରେ ଏକ ଶିବ ମନ୍ଦିର ଅଛି । ସେହି ଶିବାଳୟର ଶିବଲିଙ୍ଗ ଉପରେ କେଶର ଏକ ବଡ କବରୀ ରହିଛି । ସେହି କାରଣରୁ ତା'ଙ୍କୁ ସମସ୍ତେ କବରୀ ଲିଙ୍ଗେଶ୍ୱର ନାମରେ ଡାକନ୍ତି ଓ ପୂଜା କରନ୍ତି । କବରୀ ଲିଙ୍ଗେଶ୍ୱରଙ୍କୁ ପୂଜା କଲେ ହୁଏତ ତୁମକୁ ସୁଫଳ ମିଳିପାରେ ।

ରାଜବୈଦ୍ୟଙ୍କ ପରାମର୍ଶ ଅନୁସାରେ ରାଜନର୍ତ୍ତକୀ ସେହି ଶିବଲିଙ୍ଗଙ୍କୁ ପ୍ରାର୍ଥନା ଜଣାଇ କହିଲେ: ''ହେ ସୁରପୁର ନିବାସୀ କବରୀ-ଲିଙ୍ଗେଶ୍ୱର, ଆପଣ ମୋର କେଶକୁ ଝଡିବାରୁ ବଞ୍ଚାଇ ପାରିଲେ, ମୁଁ ଆପଣଙ୍କ ମନ୍ଦିରକୁ ଯିବି ଓ ମଣ୍ଡପରେ ନୃତ୍ୟ କରିବି ।'' ସେ ଏପରି ମାନସିକ ରଖିଲେ ।

ରାଜବୈଦ୍ୟଙ୍କ ଚିକିତ୍ସାର ପରିଣାମ ହେତୁ ହେଉ ଅଥବା କବରୀଲିଙ୍ଗେଶ୍ୱରଙ୍କ କରୁଣାରୁ ହେଉ, ରାଜନର୍ତ୍ତକୀଙ୍କର ରୋଗ ଦୂର ହୋଇଗଲା । ଓ କୀର୍ତ୍ତିସେନା ତା'ଙ୍କର ମାନସିକ ପୂରଣ କରିବାକୁ ଚାହିଁଲେ । ତେଣୁ ସେ ମହାରାଜାଙ୍କ ଠାରୁ ଅନୁମତି ଭିକ୍ଷା କଲେ ।

ରାଜା ତା'ଙ୍କଠାରୁ ସବୁ ବିଷୟ ଜାଣି ସାରିବା ପରେ କହିଲେ, ''ଅଦ୍ଭୁତ ! ଏପରି ଭକ୍ତବତ୍ସଳ

କବରୀଲିଙ୍ଗେଶ୍ୱର ସ୍ୱାମୀଙ୍କର ଦର୍ଶନ କରିବା ଏକାନ୍ତ ଆବଶ୍ୟକ ।'' ସେ ମନ୍ତ୍ରୀକୁ ଆଦେଶ ଦେଲେ, ''କୀର୍ତ୍ତିସେନାଙ୍କ ନାଟ୍ୟ-ପ୍ରଦର୍ଶନୀର ଆୟୋଜନ ସହିତ, ଆମର ଯାତ୍ରାର ଆବଶ୍ୟକୀୟ ପ୍ରସ୍ତୁତି କରାଯାଉ ।''

ଏବେ ସୁରପୁରର ନକ୍ସା ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଗଲା । ମନ୍ଦିରକୁ ଖୁବ୍ ଭଲ ଭାବେ ସଜାଗଲା । ମଣ୍ଡପରେ ରାଜନର୍ତ୍ତକୀଙ୍କ ନୃତ୍ୟ ପାଇଁ ସମସ୍ତ ପ୍ରକାରର ବନ୍ଦୋବସ୍ତ କରାଗଲା । ସେହି ଦିନ ରାଜା ମାଣିକ୍ୟବର୍ମା ଏକ ବିଶେଷ ଧରଣର ପୂଜାର ଆୟୋଜନ କରାଇଲେ । ସେହି କାରଣରୁ ସାଧାରଣ ଜନତାଙ୍କର ଭଗବତ୍ ଦର୍ଶନରେ ବାଧା ସୃଷ୍ଟି ହେଲା ।



ଦୂର ପ୍ରଦେଶରୁ ଆସିଥିବା ସୁନ୍ଦରୀ ନାମକ ସ୍ତ୍ରୀ ଦୃଢ଼ କଣ୍ଠରେ ଏହାର ପ୍ରତିବାଦ କରି ଚିତ୍କାର କଲା, ''ସେ ମହାରାଜା ହେଲେ କ'ଣ ହେଲା ? ଆମେ ମହାରାଜାଙ୍କୁ ସମ୍ମାନ କରୁ, ମାତ୍ର ତାହା ଭଗବାନ କବରୀ ଲିଙ୍ଗେଶ୍ୱରଙ୍କ ଦର୍ଶନଠାରୁ ବଡ ନୁହେଁ । ଲିଙ୍ଗେଶ୍ୱରଙ୍କ କବରୀରୁ ବାହାରୁ ଥିବା ଗଙ୍ଗାଜଳରେ ମୁଁ ପ୍ରତିବର୍ଷ ସ୍ନାନ କରୁଛି ଓ ପୁରୁଷ ହୋଇ ଯାଉଛି । ଆମର ବୁଢ଼ା ବଳଦ ଶରୀରରେ ମଧ ଯୌବନ ଫୁଟି ଉଠୁଛି । ସ୍ୱାମୀ, ଆମେ ମନ୍ଦିରରେ ପ୍ରବେଶ କରିବା ଏକାନ୍ତ ଜରୁରୀ ।''

ମହାରାଜା ସୁନ୍ଦରୀର ଚିତ୍କାରର ସାରାଂଶ ବୁଝିବା ପରେ, ତାକୁ ମନ୍ଦିର ଭିତରକୁ ଆସିବା ପାଇଁ ଅନୁମତି ଦେଲେ । ତା' ସହିତ ତା'ର ପତି ମଧ ଆସିଲେ । ସେମାନେ ସାଥିରେ ଆଣିଥିବା ମୁଣାରୁ ତୁଳା ବାହାର କରି ତଳେ ଢ଼ାଳିଲେ ଓ 'ହରହର ମହାଦେବ' କହି ଲିଙ୍ଗେଶ୍ୱର ସ୍ୱାମୀଙ୍କୁ ପ୍ରଣାମ ଜଣାଇଲେ । ତା'ପରେ ତୁଳାରେ ଅଗ୍ନିସଂଯୋଗ କଲେ ଓ ଗର୍ଭଗୃହସ୍ଥ ଶିବଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ ।

ପୂଜା ସରିବା ପରେ ମହାରାଜା ସୁନ୍ଦରୀ ଓ ତା'ର ପତିକୁ ପାଖକୁ ଡକାଇ ସେମାନଙ୍କୁ କହିଲେ: ''ମହାରାଜା ଭାବରେ କେଉଁ କାଳରୁ ଚଳି ଆସୁଥିବା ପୂଜାର ପରମ୍ପରା ମୁଁ ଭାଙ୍ଗିବା ପାଇଁ ଚାହେଁନାହିଁ । ତେଣୁ ତୁମେ ଯାହା ସବୁ କଲ ମୁଁ କିଛି ନ କହି ଚୁପ୍ ରହିଗଲି । ପାଗଳଙ୍କ ପରି ତୁମେ ଚିତ୍କାର କରୁଛ ଯେ ମୁଁ ପୁରୁଷ ହୋଇଗଲି ଓ ବୃଦ୍ଧ ବଳଦ ଯୁବକ ହୋଇଗଲା ଇତ୍ୟାଦି । ତୁମେ ଦୁହେଁ ଗର୍ଭଗୃହରେ ତୁଳା ମଧ ଜଳାଇଲ । ତୁମେ ଏସବୁ କାହିଁକି କଲ, ମୋତେ ତା'ର କୈଫତ୍ ଦର୍ଶାଅ ।

ଏହାଶୁଣି ସୁନ୍ଦରୀର ପତି ସବିନୟ ଜଣାଇଲା, ''ମହାରାଜ, ମୋର ପତ୍ନୀ ପାଗଳି ନୁହେଁ, ତା' ମୁହଁରୁ ବାହାରିଥିବା ଶବ୍ଦ ମଧ ଶୁଦ୍ଧ ପାଗଳାମୀ ନୁହେଁ । ଆମର ପରମ୍ପରା ରହିଛି ଯେ ଅଶ୍ୱିନୀ ଠାରୁ ରେବତୀ ପର୍ଯ୍ୟନ୍ତ, ସତେଇଶ ଗୋଟି ନକ୍ଷତ୍ରଙ୍କୁ

ସୂର୍ଯ୍ୟ ପ୍ରବେଶ କରିବା ପର୍ଯ୍ୟନ୍ତ ଆମେ ଆଗାମୀ ବର୍ଷାପାତର ଅନୁମାନ ଲଗାଇ ପାରୁ । ମୁଖ୍ୟତଃ ମୃଗଶିରାଠାରୁ ବିଶାଖ ପର୍ଯ୍ୟନ୍ତ ବାର ନକ୍ଷତ୍ର ଯେତିକି ବର୍ଷା ହେବା କଥା ଓ ନ ହେବା କଥା, ତାକୁ ଆଧାର କରି କୃଷିର ହାନି, ଲାଭର ଅନୁମାନ କରାଯାଇପାରେ । ଏହି ବର୍ଷ ଖୁବ୍ ଭଲ ବର୍ଷା ହୋଇଛି, ସେଥିରେ ବୁଢ଼ା ବଳଦ ମଧ୍ୟ ଖୁବ୍ ସୁସ୍ଥିରେ ହଳ ଟାଣି ପାରିବ । ରୁଦ୍ରଙ୍କ ଜଟାରୁ ନିର୍ଗତ ହେଉଥିବା ଗଙ୍ଗା ଧାରା ସଦୃଶ, ଧାରଦ୍ରା ନକ୍ଷତ୍ରରେ ଯେଉଁ ବର୍ଷା ହେବ, ସେଥିରେ ଓଦା ହୋଇ ମୋ ସ୍ତ୍ରୀ ପୁରୁଷଙ୍କ ପରି କ୍ଷେତରେ କାମ କରି ପାରିବ । ମୋ ପତ୍ନୀ ଯେଉଁ କଥା କହି ଚିତ୍କାର କରୁଥିଲେ, ତାହା ମୃଗଶିରା ଓ ଆଦ୍ରା ନକ୍ଷତ୍ର ସହିତ ସମ୍ବନ୍ଧିତ ଅଟେ । ମୋ ପତ୍ନୀ ଆପଣଙ୍କ ସମ୍ମୁଖରେ ଏପରି ପାଗଳିନୀଙ୍କ ପରି ବ୍ୟବହାର କରିଥିବାରୁ ଆପଣ ଆମକୁ କ୍ଷମା କରିବେ ।

ମହାରାଜା ମାଣିକ୍ୟ ବର୍ମା ତାଙ୍କ କଥାରେ ଶାନ୍ତ ହୋଇ କହିଲେ: ''ଏ ସବୁ ତ ଠିକ୍ କଥା, ମାତ୍ର ଗର୍ଭ ଗୃହରେ ତୁଳା ଜଳାଇବାର ଅର୍ଥ କ'ଣ ?''

''ମହାରାଜ, ପୌଷ ମାସର ସନ୍ଧ୍ୟା ବେଳେ ଲିଙ୍ଗର ମୁଣ୍ଡରେ କୋଡ଼ିଏ ତୋଳା ଉଚ୍ଚତାର ତୁଳା ପୋତାଇ କ୍ଷେତରେ ରଖିବ । ତା'ପରଦିନ ଭୋର୍ ବେଳେ ଆସି ତା'କୁ ଚୁପୁଡ଼ିବ । ଯଦି ସେଥିରୁ ବୁନ୍ଦା ବୁନ୍ଦା ହୋଇ ପାଣି ଝରିବ, ତେବେ ଜାଣିବ ଯେ, ସେ ବର୍ଷ ଭଲ ବର୍ଷା ହେବ । ଯଦି କମ୍ ପାଣି ବୁନ୍ଦା ଝରିବ, ତେବେ ତା'ର ଅର୍ଥ ହେଉଛି, ସେହି ବର୍ଷ ଭଲ ହେବ ନାହିଁ । ଏହି ପରୀକ୍ଷା ପରେ, ଆମେ ଶିବଙ୍କ ସମ୍ମୁଖରେ ଆରତୀ ଜଳାଉ ଥିଲୁ ।'' ସୁନ୍ଦରୀର ପତି କହିଲା ।

ରାଜା ତା'ର ଉତ୍ତରରେ ସନ୍ତୁଷ୍ଟ ହୋଇ କହିଲେ, ''ଆଦ୍ରା ବର୍ଷା ସମ୍ବନ୍ଧରେ ମୁଁ ବିଶେଷ କିଛି ଜାଣେ ନାହିଁ । ଆଦ୍ରାନକ୍ଷତ୍ରର ବର୍ଷାରେ ଓଦା ହୋଇ ସ୍ତ୍ରୀମାନେ ଯଦି ପୁରୁଷଙ୍କ ପରି ପରିଶ୍ରମ କରିପାରିବେ, ତେବେ ଏପରି ବର୍ଷା ସବୁବେଳେ ହେଉ ଓ ମୋର ରାଜ୍ୟ ଫଳ ପୁଷ୍ପରେ ସମୃଦ୍ଧ ହେଉ ।''

ସେହି ଦିନ ଠାରୁ ବଙ୍ଗ ଦେଶରେ ଆଦ୍ରା ନକ୍ଷତ୍ରରେ ବର୍ଷା ହେଲେ ଅତି କମ୍‌ରେ ଗୋଟିଏ ଦିନ ପାଇଁ ସ୍ତ୍ରୀଲୋକ ମାନେ କ୍ଷେତରେ କାମ କରିବାକୁ ଭୁଲନ୍ତି ନାହିଁ ।





# ଐତିହାସିକ

ଏକଦା ମହେନ୍ଦ୍ରଗିରି ରାଜ୍ୟରେ ପୁରନ୍ଦର ନାମକ ଜଣେ ରାଜା ଶାସନ କରୁଥିଲେ । ସେ ଯେ କେବଳ ରାଜ୍ୟଶାସନରେ ନିପୁଣ ଥିଲେ ତା' ନୁହେଁ, ତା'ଙ୍କର କଳା ଓ କଳାକାରଙ୍କ ପ୍ରତି ଖୁବ୍ ସମ୍ମାନ ଭାବ ରହିଥିଲା । ତେଣୁ ସୁଯୋଗ ମିଳିବା ମାତ୍ରେ ସେ ବିବିଧ ପ୍ରକାରର କଳା ଜଗତରେ ପ୍ରସିଦ୍ଧି ଲାଭ କରିଥିବା ପ୍ରତିଭାବାନ ବିଦ୍ୱାନମାନଙ୍କୁ ପୁରସ୍କୃତ କରୁଥିଲେ ।

ଥରେ ରାଜା ପୁରନ୍ଦରଙ୍କ ଦରବାରରେ ଜଣେ ବିଦେଶୀ ଲୋକ ଆସି ପହଞ୍ଚିଲେ । ତା'ଙ୍କର ନାମ ଥିଲା ଶ୍ରୀକଣ୍ଠ । ଇତିହାସ ରଚନା କରିବା ତା'ଙ୍କର ବୃତ୍ତି । ଶ୍ରୀକଣ୍ଠ ଚଉଦଟି ଭାଷାରେ ପାଣ୍ଡିତ୍ୟ ହାସଲ କରିଛନ୍ତି ଓ ଚଉଦଟି ଦେଶର ଇତିହାସ ରଚନା କରିଛନ୍ତି । ଏବେ ସେ ମହେନ୍ଦ୍ରଗିରିଠାରେ ପହଞ୍ଚିଛନ୍ତି ।

ଏପରି ଜଣେ ବିଦ୍ୱାନଙ୍କୁ ନିଜ ଦେଶରେ ପାଇ ରାଜା ପୁରନ୍ଦର ଖୁବ୍ ଆନନ୍ଦିତ ହେଲେ । ସେ ଶ୍ରୀକଣ୍ଠଙ୍କୁ କହିଲେ, ''ଆପଣ ମୋ ରାଜ୍ୟରେ ଏକ ବର୍ଷ ଅବସ୍ଥାନ କରି ଇତିହାସ ରଚନା କରନ୍ତୁ । ଆପଣଙ୍କ ପାଇଁ ମୁଁ ସମସ୍ତ ପ୍ରକାରର ସୁବିଧା କରାଇ ଦେବି ।''

''ଉତ୍ତମ କଥା ମହାରାଜ । କିନ୍ତୁ ଆପଣ ମୋତେ ନିଜର ଅନ୍ତରଙ୍ଗ ମିତ୍ର ଭାବେ ଗ୍ରହଣ କରି ଆପଣଙ୍କ ପାଖେ ପାଖେ ରହିବାର ସୁଯୋଗ ଦେବେ । ଏହା ଦ୍ୱାରା ମୋ କାମ ସହଜ ହୋଇଯିବ ।'' ଶ୍ରୀକଣ୍ଠ ପ୍ରସ୍ତାବ ଦେଲେ ।

ପୁରନ୍ଦର ଏହି ସର୍ତ୍ତ ସ୍ୱୀକାର କଲେ । ଶ୍ରୀକଣ୍ଠ ରାଜାଙ୍କର ଅନ୍ତରଙ୍ଗ ମିତ୍ର ପଦ ପ୍ରାପ୍ତ ହୋଇ ଅଧିକରୁ ଅଧିକ ସମୟ ରାଜାଙ୍କ ସହିତ ପରିଭ୍ରମଣ କରିବା, ଶିକାର ଖେଳିବା, ଯୁଦ୍ଧ କ୍ଷେତ୍ରକୁ ଯିବା ଏପରି କାମରେ ସମୟ ବିତାଇଲେ । ଏହି ମାଧ୍ୟମରେ ସେ ରାଜାଙ୍କର ଶାସନ ପ୍ରକ୍ରିୟାକୁ ସୂକ୍ଷ୍ମ ରୂପରେ ଅନୁଶୀଳନ କଲେ । ଏହା ବ୍ୟତୀତ ସେ ନଗରରେ ଭ୍ରମଣ କରି ସବୁ ସ୍ତରର ଲୋକମାନଙ୍କ ସହିତ ଆଲୋଚନା କରି ତଥ୍ୟ ସଂଗ୍ରହ କଲେ । ନଗରର ସବୁ ଲୋକ ଜାଣିଗଲେ ଯେ ଶ୍ରୀକଣ୍ଠ

ଇନ୍ଦ୍ରନାଥ



ରାଜାଙ୍କର ଖୁବ୍ ନିକଟତମ ଲୋକ । ତେଣୁ ଲୋକମାନେ ତା'ଙ୍କୁ ବିଶେଷ ସମ୍ମାନ ଦେଖାଇଲେ । ନଗରର ଧନୀକଶ୍ରେଣୀର ଲୋକମାନେ ଓ ବ୍ୟବସାୟୀମାନେ ତା'ଙ୍କୁ ନିମନ୍ତ୍ରଣ କରି ବିଶେଷ ଭୋଜି ସଭାର ଆୟୋଜନ କଲେ ।

ଶ୍ରୀକଣ୍ଠ ମହେନ୍ଦ୍ରଗିରିକୁ ଆସିବାର ଗୋଟିଏ ବର୍ଷ ପୁରିଗଲା । ମହେନ୍ଦ୍ରଗିରିର ଇତିହାସ ଲେଖିବା ମଧ୍ୟ ସମାପ୍ତ ହୋଇଗଲା । ଦିନେ ରାଜା ସେହି ଅପୂର୍ଣ୍ଣ ଗ୍ରନ୍ଥ ମଗାଇ ପଢ଼ିଲେ । ସେହି ଗ୍ରନ୍ଥରେ ସେ ମହେନ୍ଦ୍ରଗିରିର ସଂସ୍କୃତି, ବିଚାର, ରାଜାଙ୍କର ଲୋକ ହିତକର କାର୍ଯ୍ୟ, ରାଜା ତଥା କର୍ମଚାରୀଙ୍କ ମଧ୍ୟରେ ଥିବା ପାରସ୍ପରିକ ବିଶ୍ୱାସ ଏବଂ ସହଯୋଗ ଇତ୍ୟାଦି ବିଷୟରେ ଖୁବ୍ ସୁନ୍ଦର ଶୈଳୀରେ ବର୍ଣ୍ଣନା କରିଥିଲେ ।

କିନ୍ତୁ ସେଥିରେ ଗୋଟିଏ ସ୍ଥାନରେ ଲେଖା ଥିଲା- ଦେଶର ଜନସାଧାରଣ ଖୁବ୍ ସରଳ । ରାଜା ହେଉଛନ୍ତି ଧର୍ମାତ୍ମା । ରାଜ କର୍ମଚାରୀ ମାନଙ୍କର ରାଜାଙ୍କ ପ୍ରତି ଅନୁପମ ରାଜଭକ୍ତି ଅଛି । କିନ୍ତୁ ଏଇ ନଗରୀର ବ୍ୟବସାୟୀ ଓ ଧନୀକ ଶ୍ରେଣୀୟ ଲୋକମାନେ ଅନ୍ୟାୟପୂର୍ବକ ଧନ ଉପାର୍ଜନ କରି ଭ୍ରଷ୍ଟାଚାରୀ ଜୀବନ ବିତାଉଛନ୍ତି ।''

ଏହି ଶେଷ ଧାଡି ଗୁଡିକ ରାଜାଙ୍କୁ ଭଲ ଲାଗିଲା ନାହିଁ । ସେ ଶ୍ରୀକଣ୍ଠଙ୍କୁ ଡକାଇ ପଚାରିଲେ, ''ମହାପଣ୍ଡିତ, ଆପଣଙ୍କ ଗ୍ରନ୍ଥ ଖୁବ୍ ଭଲ ହୋଇଛି । ଏଥିରେ କୌଣସି ତ୍ରୁଟି ବାହାର କରାଯାଇପାରିବ ନାହିଁ । କିନ୍ତୁ ମୋ ଦେଶର ବ୍ୟବସାୟୀ ଓ ଧନୀ ଲୋକମାନଙ୍କୁ ଆପଣ ଭ୍ରଷ୍ଟାଚାରୀ ଓ ସ୍ୱାର୍ଥପର ଭାବେ ଯାହା ବର୍ଣ୍ଣନା କରିଛନ୍ତି । ତାହା ସଂପୂର୍ଣ୍ଣ ଅସତ୍ୟ ଅଟେ ।''

''ମୋର ଲେଖାରେ କୌଣସି ତ୍ରୁଟି ଥିଲେ ମୋତେ କ୍ଷମା କରିବେ, ମହାରାଜ ! ଏହି ଗ୍ରନ୍ଥକୁ ସଂପୂର୍ଣ୍ଣ କରିବା ପୂର୍ବରୁ ମୁଁ ସେହି ତ୍ରୁଟିକୁ ସୁଧାରି ନେବି ।'' ଶ୍ରୀକଣ୍ଠ କହିଲେ ।

ଏହା ଶୁଣି ରାଜା ଖୁବ୍ ଖୁସି ହେଲେ ତା'ପରଦିନ ଶ୍ରୀକଣ୍ଠ ସହରର ବଡ ବଡ ଧନୀ ତଥା ବ୍ୟବସାୟୀମାନଙ୍କୁ ସାକ୍ଷାତ କରିବାକୁ ଗଲେ । ସେମାନଙ୍କୁ କହିଲେ- ''ରାଜା, ଚକ୍ରବର୍ତ୍ତୀ ସମ୍ରାଟଙ୍କ ପାଖକୁ ଉପହାର ପଠାଇବେ । ତେଣୁ ଅପାଣମାନଙ୍କ ପାଖରେ ଯେଉଁ ଉତ୍ତମ କିସମର ହୀରା ଅଛି, ତା'ର ଏକ ତାଲିକା ପ୍ରସ୍ତୁତ କରି ଦିଅନ୍ତୁ ।'' ଶ୍ରୀକଣ୍ଠ ତାଲିକା ଉପରେ ବ୍ୟବସାୟୀମାନଙ୍କର ଦସ୍ତଖତ କରାଇନେଲେ ।

ତା'ପରଦିନ ସକାଳୁ ନଗରୀରେ ଖବର ଖେଳିଗଲା ଯେ ଗତ ରାତିରୁ ଶ୍ରୀକଣ୍ଠ ଫେରାର ହୋଇ ଯାଇଛି । ଏହି ଖବର ପାଇ ସେମାନେ

ସମସ୍ତେ ଏକତ୍ର ହୋଇ ରାଜାଙ୍କ ପାଖକୁ ଗଲେ । ଯେଉଁ ଲୋକମାନେ ପୂର୍ବଦିନ ଶ୍ରୀକଣ୍ଠଙ୍କୁ ସୁନା ଓ ହୀରା ଦେଇଥିଲେ, ସେମାନେ ନିଜ ନିଜର ତାଲିକା ଦେଖାଇ ରାଜାଙ୍କୁ କହିଲେ, ‘‘ମହାରାଜା, ଆପଣ ଆମକୁ ରକ୍ଷା କରନ୍ତୁ । ଆପଣ ଆମର କ୍ଷତିର ଭରଣା କରି ଦିଅନ୍ତୁ ।’’

ରାଜା ଚିନ୍ତା କଲେ ଯେ ସେ ଶ୍ରୀକଣ୍ଠଙ୍କୁ ଏପରି ସୁନା, ହୀରା ସଂଗ୍ରହ କରିବା ପାଇଁ ଆଦେଶ ଦେଇ ନ ଥିଲେ । ଶ୍ରୀକଣ୍ଠ ନିଜ ତରଫରୁ ଏହା କରିଛନ୍ତି ଓ ସବୁ କିଛି ଲୁଟିନେଇ ଚାଲି ଯାଇଛନ୍ତି । ତେଣୁ ସେ ଗୁମାସ୍ତାଙ୍କୁ ଡକାଇ ଆଦେଶ ଦେଲେ ଯେ, କିଏ କେତେ କ୍ଷତି ପୂରଣ ପାଇବେ, ତା’ର ଏକ ତାଲିକା ପ୍ରସ୍ତୁତ କରାଯାଉ ।

ଗୁମାସ୍ତା ସମସ୍ତଙ୍କର ତାଲିକା ହିସାବ କରି ଦେଖିଲେ ଯେ ସମୁଦାୟ ଯେତିକି ଅର୍ଥ ହେଉଛି, ସେତିକି ଅର୍ଥ ରାଜକୋଷରେ ମଧ୍ୟ ନାହିଁ । ଏହା ଶୁଣି ରାଜା ମଧ୍ୟ ଚିନ୍ତାରେ ପଡିଗଲେ ।

ଏତିକିବେଳେ ଶ୍ରୀକଣ୍ଠ ଏକ ଓଜନଦାର ଥଳୀ ସାଥିରେ ଧରି ସେଠାରେ ପହଞ୍ଚିଲେ ଓ ରାଜାଙ୍କ ସମ୍ମୁଖରେ ତାହା ରଖି, ଗୋଟିଏ ତାଲିକା ବାହାର କରି କହିଲେ: ‘‘ମହାରାଜ, ମୁଁ ଯେଉଁମାନଙ୍କଠାରୁ ଯେଉଁ ଜିନିଷ ଆଣିଛି, ତାହା ଏଇ ତାଲିକା ମୁତାବକ ଆପଣ ସେମାନଙ୍କୁ ଫେରାଇ ଦିଅନ୍ତୁ ।’’

ରାଜାଙ୍କ ମୁହଁରୁ କିଛି କଥା ବାହାରିବା ପୂର୍ବରୁ ସେମାନେ ରାଜା ପାଦତଳେ ପଡିଯାଇ କହିଲେ: ‘‘ମହାରାଜ, ଆପଣଙ୍କୁ, ଆମେ ଯେଉଁ ତାଲିକା ଦେଇଥିଲୁ ତାହା ସଠିକ୍ ନୁହେଁ । ଆମେ ଯେତେବେଳେ ଶୁଣିଲୁ ଯେ ଶ୍ରୀକଣ୍ଠ ପଳାୟନ କରିଛନ୍ତି, ଆମେ ଲୋଭପରବଶ ହୋଇ ମିଥ୍ୟା ତାଲିକା ବନାଇ ଆପଣଙ୍କୁ ଦେଇଥିଲୁ ।’’

ରାଜା ସେମାନଙ୍କୁ କୌଣସି ଜିନିଷ ନ ଫେରାଇବାକୁ ଆଦେଶ ଦେଲେ । ସେମାନେ ଶୂନ୍ୟ ହସ୍ତରେ ଫେରି ଆସିଲେ । ଶ୍ରୀକଣ୍ଠଙ୍କ ହାତରୁ ରାଜା ଥଳିଟିକୁ ନେଇ ଗୁମାସ୍ତାଙ୍କ ହାତକୁ ବଢ଼ାଇ ଦେଲେ ଓ ରାଜକୋଷରେ ଜମା କରିବାକୁ ଆଦେଶ ଦେଲେ ।

ଏହାପରେ ରାଜା ଶ୍ରୀକଣ୍ଠଙ୍କୁ କହିଲେ- ‘‘ମହାପଣ୍ଡିତ, ଆପଣଙ୍କ ଗ୍ରନ୍ଥରେ କୌଣସି ମିଥ୍ୟା କଥା ଲେଖା ନ ଥିଲା । ଏହା ପ୍ରମାଣିତ କରିବା ପାଇଁ ଆପଣଙ୍କୁ ଖୁବ୍ ପରିଶ୍ରମ କରିବାକୁ ପଡିଲା ।

ବଡ ଲୋକଙ୍କ ସମ୍ପର୍କରେ ସତ୍ୟ କଥା ପ୍ରକାଶ କଲେ, ଏପରି ପରିଶ୍ରମ କରିବାକୁ ପଡେ । ମହାରାଜ ଏହା ମଧ୍ୟ ଏକ କଳା !’’ ଶ୍ରୀକଣ୍ଠ ହସି ହସି ଉତ୍ତର ଦେଲେ ।





ଶୀର୍ଷକ ସନ୍ଧାନ କରନ୍ତୁ

# ଫଟୋ ପରିଚୟ ପ୍ରତିଯୋଗିତା







**ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।**

ପରିଚୟୋକ୍ତି ସହ ନିଜ ଠିକଣା ପୋଷ୍ଟକାର୍ଡ଼ରେ ଇଂରାଜୀରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ ।
**ଚିତ୍ର ପରିଚୟ ପ୍ରତିଯୋଗିତା, ଚାନ୍ଦାମାମା, ପ୍ଲଟ ନଂ-୮୨**
**ଡିଫେନ୍ସ ଅଫିସର୍ସ କଲୋନୀ, ଇକାଟୁଥାଙ୍ଗଲ, ଚେନ୍ନାଇ- ୬୦୦୦୯୭**
ଫେବୃୟାରୀ ୨୦ ତାରିଖ ସୁଦ୍ଧା ପରିଚେୟୋକ୍ତି ଆମ ପାଖରେ ପହଞ୍ଚିବା ଦରକାର । ସର୍ବଶ୍ରେଷ୍ଠ ପ୍ରତିଯୋଗୀଙ୍କୁ ଶହେଟଙ୍କା ପୁରସ୍କାର ଭାବେ ପ୍ରଦାନ କରାଯିବ ।

## ଶୁଭେଚ୍ଛା

ପୂର୍ବ ସଂଖ୍ୟା ଚିତ୍ର ପ୍ରତିଯୋଗିତାର ବିଜେତା
ସୃଜନିକା ଦାଶ
ମାର୍ଫତ : ପୂର୍ଣ୍ଣ ଚନ୍ଦ୍ର ଦାଶ
ସା: ଘନଶ୍ୟାମପୁର ଶାସନ, ପୋ: ଦୁଲାଖା ପାଟଣା
ଜି.: ଯାଜପୁର- ୭୫୫ ୦୨୫(ଓଡିଶା)

### ବିଜୟୀ ପ୍ରତିଯୋଗୀ





୧ମ ଚିତ୍ର : ନାନୀ ଚାଲିଯିବ ଶାଶୁଘରକୁ ଲୋ
ସାଜିଛି କନିଆଁ ବେଶ ।
୨ୟ ଚିତ୍ର : କେଉଁ ଦିନ ହେବି କନିଆଁ ବେଶ ମୁଁ
ଭାବିଲେ ମାଡୁଛି ହସ ।

ଜହ୍ନମାମୁ ବାର୍ଷିକ ଦେୟ
ଡାକଯୋଗେ ଟ୧୨୦/-

Payment in favour of CHANDAMAMA INDIA LIMITED
No. 82, Defence Officers Colony, Ekkatuthangal, Chennai - 600 097

Printed and Published by B. Viswanatha Reddi at B.N.K. Press Pvt. Ltd., Chennai - 600 026 on behalf of Chandamama India Limited, No. 82, Defence Officers Colony, Ekkatuthangal, Chennai - 600 097. Editor : Viswam

